# ଅନ୍ଧକୁହେଳି

ଡଃ ଦିଗରାଜ ବ୍ରହ୍ମା




ଭାରତୀୟ ସାହିତ୍ୟ କେନ୍ଦ୍ର
ଭୁବନେଶ୍ୱର

ଅନ୍ଧକୁହେଳି
ଡଃ ଦିଗରାଜ ବ୍ରହ୍ମା
(ବ୍ରହ୍ମା ନିବାସ, ମହାବୀର ବିହାର, କଳାରାହାଙ୍ଗ, କୀଟ୍, ଭୁବନେଶ୍ୱର-୨୪)

ପ୍ରକାଶକ
ଭାରତୀୟ ସାହିତ୍ୟ କେନ୍ଦ୍ର
ଏଲ୍/୩୮୨, ବରମୁଣ୍ଡା ହାଉସିଂ ବୋର୍ଡ କଲୋନୀ
ଭୁବନେଶ୍ୱର - ୭୫୧୦୦୩
ପ୍ରଥମ ପ୍ରକାଶ : ୨୦୧୪

ମୁଦ୍ରଣ
ସାହିତ୍ୟସିନ୍ଧୁ, ଭୁବନେଶ୍ୱର -୩
ମୂଲ୍ୟ : ଟ. ୮୦/- (ଅଶି ଟଙ୍କା ମାତ୍ର)

**ANDHAKUHELI**
**by**
Dr Digaraj Brahma

**Published by**
Bharatiya Sahitya Kendra
L/382, Baramunda Housing Board Colony
Bhubaneswar - 751003

**1st Edition**
2014
**Printed at**
Sahitya Sindhu, Bhubaneswar -3

**Price** : Rs. 80/- (Rupees Eighty Only)

# ସୂଚୀପତ୍ର

## 'ଅନ୍ଧକୁହେଳି'ର ଚରିତ୍ରମାନଙ୍କ ସମ୍ପର୍କରେ

ଜୀବନର ଚଲାପଥ ଯେ ଏତେ ସୁଦୀର୍ଘ ତାହା ମୁଁ ଜାଣି ନଥିଲି !

ସେଦିନ ଗାଁକୁ ଗଲାବେଳେ ମୁଁ ରାସ୍ତାରେ ଖୋଜୁଥିଲି ସେହି କାଳ୍ପନିକ ଚରିତ୍ରର ଲୋକମାନଙ୍କୁ ଯେଉଁମାନଙ୍କୁ ମୁଁ ମୁଣ୍ଡ ନୁଆଁଇ 'ନମସ୍କାର' କରୁଥିଲି । ଆଉ ସେମାନେ ମୋତେ ପଚାରୁଥିଲେ ''କ'ଣ ସବୁ ଭଲ ତ ?''

ସେମାନଙ୍କ ଝାପ୍‌ସା ଝାପ୍‌ସା ମୁହଁ ମୋର ଆଖି ଆଗକୁ ଚାଲି ଆସୁଥିଲା । ଅଲକ୍ଷ୍ୟରେ ହାତ ମୋର ଉଠିଯାଉଥିଲା । ସେମାନଙ୍କୁ ପ୍ରଣିପାତ କରିବାକୁ । ମାତ୍ର ସେମାନେ ସେଠାରେ ନଥିଲେ । ହୁଏତ ଆକାଶରେ ସେମାନେ ଗୋଟିଏ ଗୋଟିଏ ତାରା ହୋଇଯାଇଥିଲେ ।

ଆଉ ଯେଉଁମାନଙ୍କ ସହିତ ମୋର ଦେଖା ହେଉଥିଲା, ସେମାନେ ମୋତେ ଚିହ୍ନି ନଥିଲେ ।

ମୁଁ ମଧ୍ୟ ସେମାନଙ୍କୁ ଚିହ୍ନି ନଥିଲି । ତେଣୁ ବସ୍‌ଷ୍ଟାଣ୍ଡରୁ ଗାଁକୁ ଯିବାର ସୁଦୀର୍ଘ ପଥ ଅତିକ୍ରମ କରିବା ମୋ ପକ୍ଷରେ ବହୁତ କଷ୍ଟକର ହେଉଥିଲା ।

ଏହି ସୁଦୀର୍ଘ ଜୀବନପଥରେ ମୁଁ ବହୁ ଘଟଣା ଓ ଭଲମନ୍ଦ ଦେଖିଛି । ଅନ୍ୟମାନଙ୍କ ଅଭିଜ୍ଞତାରୁ ଅନେକ କିଛି ଶିଖିଛି । ସେମାନଙ୍କର ପ୍ରତ୍ୟେକ କାର୍ଯ୍ୟ ଓ ସଂଳାପ ମୋ ଗପର ଚରିତ୍ର ମାଧ୍ୟମରେ ପ୍ରତିଫଳିତ ହୋଇଛନ୍ତି । କଳ୍ପନାର ରଙ୍ଗ ତୂଳୀରେ ସେମାନେ ଗୋଟିଏ ପରେ ଗୋଟିଏ ଆସି ମୋ ଚରିତ୍ର ମାଧ୍ୟମରେ ଉଦ୍‌ଭାସିତ ହୋଇଛନ୍ତି ।

ସେହି ସବୁ ଚରିତ୍ର ଜୀବନର ''ଅନ୍ଧକୁହେଳି'' ମଧ୍ୟରେ ନିଶ୍ଚିତ ଭାବେ କେତେବେଳେ କାହାକୁ ବାଟ ଦେଖାଇବେ ।

ସେମାନଙ୍କ ଉପରେ ମୋର ଅତୀତରେ ଅତୁଟ ବିଶ୍ୱାସ ଥିଲା ।

କାରଣ ସେମାନେ ମୋର ଗୁରୁ ହେବାର ମର୍ଯ୍ୟାଦା ଲାଭ କରିଥିଲେ ।

ମୁଁ ଆଶା କରୁଛି 'ଅନ୍ଧକୁହେଳି'ର ପାଠକ-ପାଠିକାଙ୍କର ସେମାନଙ୍କ ଉପରେ ସେହି ଅତୁଟ ଆସ୍ଥା ଓ ବିଶ୍ୱାସ ରହିବ ।

ସେମାନେ ସେମାନଙ୍କୁ ଖୁବ୍ ନିକଟରୁ ବୁଝିବାକୁ ଚେଷ୍ଟା କରିବେ ଓ ନିଜ ଭିତରେ ଜଣେ ବୋଲି ଆପଣେଇ ନେବେ ।

ଲେଖକ

# ଅନ୍ଧକୁହେଳି

ସନାତନ ! ସନାତନ !! ଡାକିଡାକି ଘର ଭିତରକୁ ପ୍ରବେଶ କଲେ ମହୀଧରବାବୁ ଓରଫ୍ ମହୀଧର ପଟ୍ଟନାୟକ । ପାରଳାଖେମୁଣ୍ଡିର ଜଣେ ଉଚ୍ଚପଦସ୍ଥ ଅଫିସର ହିସାବରେ ଏଇ ଅଳ୍ପ କେଇଦିନ ହେଲା କାର୍ଯ୍ୟରେ ଯୋଗ ଦେଇଛନ୍ତି । ବାବୁ ଯେ ଏଇ ଦିନେ ଦୁଇଦିନ ହେଲା ପାରଳାଖେମୁଣ୍ଡି ଯାଇ ଏତେ ଶୀଘ୍ର ଫେରି ଆସିବେ, ଏକଥା ବା ଏଇ ଚାକର ବୁଢ଼ା ସନାତନ କାହିଁକି ଭାବିବ ? ବାବୁଙ୍କ ଡାକରେ ଚମକି ପଡ଼ି ତଳ ମହଲାରେ କାମ କରୁଥିବା ଚାକର ବୁଢ଼ା ସନାତନ ନଇଁ ନଇଁ ଧାଇଁ ଆସିଲା । ହାତରେ ତା'ର ଉଇଲ୍ସ୍ ଫିଲ୍ଟର ସିଗାରେଟ୍ ପ୍ୟାକେଟ୍ଟା । ବାବୁଙ୍କ ଡାକ ସହିତ ସନାତନର ହାତ ସିଗାରେଟ୍ ପ୍ୟାକେଟ୍ ଧରିବାରେ ଦୀର୍ଘ ଦିନ ହେଲା ଅଭ୍ୟସ୍ତ । ଯଦି ପ୍ୟାକେଟ୍ ହାତକୁ ବଢ଼େଇ ଦିଆ ନଗଲା, ତେବେ ବାବୁଙ୍କର କି ବିରକ୍ତି ! କି ତାଗିଦ୍ !

ଏସବୁ ଦୀର୍ଘ କୋଡ଼ିଏ ବର୍ଷ ହେଲା ସହି ଆସୁଛି ସନାତନ । ଜୁଳୁ ଜୁଳୁ ହୋଇ ବାବୁଙ୍କୁ ଚାହିଁବା ଛଡ଼ା ତା'ର ଆଉ କିଛି କରିବାର ଚାରା ନାହିଁ । ଯେମିତି ଚାକର ଜୀବନ ପାଇ ପଥର ପରି ସହିବା ହେଉଛି ତା'ର କାମ । ବାବୁଙ୍କ ହାତକୁ ଫିଲଟର ପ୍ୟାକେଟ୍ଟା ବଢ଼େଇ ଦେଉ ଦେଉ ସନାତନ ପଚାରିଲା, ବାବୁ ! କ'ଣ ସଙ୍ଗେ ସଙ୍ଗେ ଭୁବନେଶ୍ୱରରେ କିଛି କାମ ପଡ଼ିଲାକି ? ବାବୁ ଆପଣେ ତ କହୁଥିଲେ ଦଶ ପନ୍ଦର ଦିନ ପରେ ଆସିବେ ବୋଲି । ଦୁଇଦିନ ଯାଇନି । ପୁଣି ଫେରି ଆସିଲେ ଯେ ?''

ସନାତନର କଥା ନଶୁଣିଲା ପରି ମହୀଧରବାବୁ ପଚାରିଲେ, ଆଚ୍ଛା କହିଲୁ କୁନୁ କୁଆଡ଼େ ଗଲା ?''

ସନାତନ କହିଲା, ''ସାନବାବୁଙ୍କ କଥା ପଚାରୁଛନ୍ତି ବାବୁ ! ସେ ଚାରିଟା ବାଜିଲେ କ'ଣ ଘରେ ରହୁଛନ୍ତି । କ୍ରିକେଟ୍ ବ୍ୟାଟ୍ଟା ଧରି ସାଙ୍ଗସାଥୀଙ୍କ ମେଳରେ କେଉଁଆଡ଼େ ଚାଲି ଯାଉଛନ୍ତି ! ସଂଜ ସରିକି ଘରକୁ ଫେରି ମୋତେ କହୁଛନ୍ତି ''ବୁଢ଼ା ଅଜା ! ମୋତେ ଜାଣିଛ ମୁଁ ଆଜି ବଲ୍‌ରେ ଏ କାଠଟାକୁ ପିଟି ପିଟି ସେଂଚୁରୀ କରିଛି !'' ହେଲେ ବାବୁ ସେ ସେଞ୍ଚୁରୀ ଫେଞ୍ଚୁରୀ କ'ଣ ମୁଁ ବୁଝିଛି ! ମୁଁ ଏତିକି ଖାଲି

କହୁଚି ବାବୁ ଗୋଟେ କ'ଣ ବଡ଼ କାମ କରିଛନ୍ତି । ମୁଁ ଖୁସି ହେଉଛି । ମୋ ସହିତ ବାବୁ ବି ଖୁସି ହେଉଛନ୍ତି ।

ସନାତନକୁ ଆଉ ଅଧିକ କହିବାକୁ ନଦେଇ ବାବୁ ହାତକୁ ତା'ର ସିଗାରେଟ୍ ପ୍ୟାକେଟ୍‌ଟା ଫେରାଇ ଦେଉ ଦେଉ କହିଲେ,''ସନାତନ ! ଏ ପ୍ୟାକେଟଟା ଧର । ଆଉ ମୁଁ ନକହିଲେ ମୋ ହାତକୁ ସିଗାରେଟ୍ ପ୍ୟାକେଟ୍ ଦେବନି । ଗଲ, ଦୁଇକପ୍ କଫି କରିଆଣିବ । ତୁମେ କପ୍‌ଟିଏ ପିଇବ ଓ ମୁଁ କପ୍‌ଟିଏ ପିଇବି ।'' ଏହାକହି ବାବୁ ଘର ଭିତରେ ଥିବା ବଡ଼ ଆର୍ମ ଚେୟାର ଉପରେ ଗଡ଼ି ପଡ଼ିଲେ ।

ସିଗାରେଟ୍ ପ୍ୟାକେଟ୍ ଧରି ସନାତନ ଚାଲିଲା ରୋଷେଇ ଘରକୁ । କଫି କରୁ କରୁ ଭାବିଲା ବାବୁଙ୍କ ଡାକ ହେଉ ହେଉ ସିଗାରେଟ୍ ପ୍ୟାକେଟ୍ ନ ଆସିଲେ ବାବୁ କେତେ ବିରକ୍ତ ହେଉଥିଲେ । ଆଜି ସେ ବାବୁଙ୍କ ମୁହଁରୁ ଏ କ'ଣ ଶୁଣୁଛି । ଦୀର୍ଘ କୋଡ଼ିଏ ବର୍ଷ ପରେ ସିଗାରେଟ୍ ବଦଳରେ କଫି । ଭଦ୍ରଲୋକଙ୍କ ପାଇଁ ରଖିଥିବା କଫିକୁ ସିଗାରେଟ୍ ଛାଡ଼ି ବାବୁ ଆଜି ପିଇବେ । ଏକଥା ସନାତନକୁ କେମିତି କେମିତି ଲାଗୁଥିଲା । ସତକି ମିଛ ନଭାବି ସେ ଏକା ନିଃଶ୍ୱାସକେ ଦୁଇକପ୍ କଫି ତିଆରି କରି ଆସି ବାବୁଙ୍କ ପାଖରେ ପହଞ୍ଚିଲା । ଗୋଟିଏ କପ୍ ହାତକୁ ବଢ଼େଇ ଦେଲା । ଆଉ ଗୋଟିଏ କପ୍ ହାତରେ ଧରି ଠିଆହେଲା ।

ବାବୁ ସନାତନକୁ ଚାହିଁ କହିଲେ,''ବସ, ତୁମ ସହିତ ମୋର କଥା ଅଛି ।''

ସନାତନ ଚଟାଣ ଉପରେ ବସି ପଡ଼ିଲା ।

ବାବୁ ଆରମ୍ଭ କଲେ, ''ସନାତନ, ଆମ ଘର କହିଲେ ମୁଁ ତୁମକୁ ବୁଝେ । ଘରର ଇତିହାସ ପୃଷ୍ଠା ମଧ୍ୟରୁ ତୁମେ ହେଉଚ କେତୋଟି ପୃଷ୍ଠା । କୁନୁକୁ କେତେବର୍ଷ ହେଲା ତୁମେ କ'ଣ ଜାଣିନ ?

ସନାତନ ତା'ର ପକ୍ୱ କେଶ ବେଷ୍ଟିତ ମଥା ଉପରେ ହାତ ବୁଲେଇ ଆଣୁ ଆଣୁ କହିଲା,''ବାବୁ ଏଇ କଥା ମୁଁ କହି ପାରିବିନି ?'' ସାନ ବାବୁଙ୍କୁ ପରା ପନ୍ଦରବର୍ଷ ପୂରି ଷୋଳ ଚାଲିଲା । ଏ ହିସାବ ତ ମୋର ତୁଣ୍ଡେ ତୁଣ୍ଡେ ଅଛି ।''

ମହୀଧର ବାବୁ ଏକ ଅଭିମାନ ଭରା କଣ୍ଠରେ କହିଲେ,''ସନାତନ, ମୁଁ ସେହି କଥା ତୁମ ମୁହଁରୁ ଶୁଣିବାକୁ ଚାହୁଁଥିଲି । କୁନୁକୁ ଷୋଳବର୍ଷ ହେଲା, ହେଲେ କୁନୁ ପାଇଁ ଆମେ ଷୋଳ ପାଲାଟିଏ କରିବା କଥା ବି ଚିନ୍ତା କରି ପାରିଲେ ନାହିଁ । ହେଲେ ମୁଁ ଗାୟତ୍ରୀଠାରୁ ଚିଠି ପାଇ ଜାଣୁଛି କୁନୁକୁ ଷୋଳ ବର୍ଷ ପୂରିବାକୁ ଆଉ ଚାରିଦିନ ମାତ୍ର ବାକି ଅଛି । ଆମକୁ ଏଇ ଦୁଇଦିନ ମଧ୍ୟରେ ସବୁ କିଛି ଯୋଗାଡ଼ କରିବାକୁ ପଡ଼ିବ । ବନ୍ଧୁବାନ୍ଧବଙ୍କୁ ନିମନ୍ତ୍ରଣ କରିବାକୁ ପଡ଼ିବ ।''

ସାନ ମା'ଙ୍କ ନାମ ଶୁଣି ସନାତନ ଚିହିଁକି ଉଠି କହିଲା, ''ବାବୁ ସାନ ମା' ସତରେ କ'ଣ ଚିଠି ଦେଇଥିଲେ ?''

ହଁ' ଉତ୍ତର ଦେଲେ ମହୀଧରବାବୁ । ସନାତନ ପୁଣି ଉତ୍କଣ୍ଠାଭରା ସ୍ୱରରେ ପଚାରିଲା, ''ସାନ ମା' କ'ଣ ପୂଜାକୁ ଆସିବେ !''

'ନା' ଅତି ସ୍ୱାଭାବିକ ଓ ସରଳ ଭାଷାରେ ଉତ୍ତର ଦେଲେ ମହୀଧରବାବୁ । ''ତେବେ ?'', ସନାତନ ପଚାରିଲା ।

''ତେବେ ଆଉ କ'ଣ'', ମହୀଧର ବାବୁ ଆରମ୍ଭ କଲେ, 'ଆମକୁ ପୁଅର ଷୋଳ୍‌ପାଲା କରିବାକୁ ହେବ, ବନ୍ଧୁବାନ୍ଧବଙ୍କୁ ନିମନ୍ତ୍ରଣ କରିବାକୁ ହେବ । ତୁମେ ସନ୍ଧ୍ୟାବେଳକୁ ପରିନନାଙ୍କୁ ଡାକି ଆଣ । ପୂଜା ପାଇଁ ଯାହା ଯାହା ହେବ ତାଲିକା କରିବା । ମୁଁ ମଧ୍ୟ ଅଧ୍ୟାପକ ପଣ୍ଡାଙ୍କୁ ଖବର ଦେଉଛି । ସେ ଭଲ ପାଲା କରନ୍ତି । ତାଙ୍କ ମୁହଁରୁ ଷୋଳପାଲା ଶୁଣିବାକୁ ଆମ ଅଫିସର୍ ମହଲର ସମସ୍ତଙ୍କ ଆଗ୍ରହ । ମୁଁ ତାଙ୍କ ସହିତ କଥାବାର୍ତ୍ତା ହୋଇଛି । ସେ ପାଲା ବୋଲିବେ ।''

ବାବୁଙ୍କର କଥା ଶୁଣି ବୁଢ଼ା ସନାତନର ଆଖିରେ ଲୁହ ଜକେଇ ଆସଲା । ସେ କାନ୍ଦ କାନ୍ଦ ହୋଇ କହିଲା, ''ବାବୁ ପୁଅର ଷୋଳ ପାଲାକୁ ମା' କ'ଣ ସତରେ ଆସିବେ ନାହିଁ ?''

ସନାତନର ଆଖିରେ ଲୁହ ଦେଖି ମହୀଧର ବାବୁ କହିଲେ, ''ମା'' ଘରଛାଡ଼ି ଚାଲିଯିବା ତୁମ ମନରେ ଯେତିକି ଦୁଃଖ ଦେଇଚି ମୋ ମନରେ ତାହାଠାରୁ ଆହୁରି ଅଧିକ ଦୁଃଖ ଦେଇଛି ସନାତନ । ହେଲେ ମୁଁ ତ ମା'କୁ ଘରୁ ତଡ଼ି ଦେଇନି । ଆଜି କେଉଁ ମୁହଁରେ କେମିତି ଯାଇ ମା'ଙ୍କୁ ତୋର କହିବି ପୁଅର ଷୋଳ ପାଲାକୁ ଆସିବା ପାଇଁ ।

ଏକ ଦୀର୍ଘ ନିଃଶ୍ୱାସ ପକାଇ ମହୀଧର ବାବୁ କହିଲେ, ''ମା' ଆସିବାର ଗୋଟିଏ ମାତ୍ର ଉପାୟ ମୋ ଆଖିକୁ ଦେଖା ଯାଉଛି । କୁନୁ ନିଜେ ଯଦି ଯାଇ ମା'କୁ ତା'ର ଡାକି ଆଣନ୍ତା ... !''

ସନାତନ ଆଖିରୁ ଲୁହ ପୋଛି କହିଲା, ''ବାବୁ ! ମୁଁ ବି ସେଇକଥା ଭାବୁଥିଲି । ଥରେ ଦୁଇଥର କୁନୁବାବୁଙ୍କୁ କହିଲିଣି । ମାତ୍ର ସେ ରୋକ ଠୋକ୍ ଭାବେ ମନାକରି କହୁଛନ୍ତି, ''ବାପା-ମା'ଙ୍କ କଜିଆରେ ସେ ପଶିବେ ନାହିଁ । ମା'ଙ୍କ ପାଖକୁ ମଧ୍ୟ ଯିବେ ନାହିଁ ।

''ଛାଡ଼ ସେ କଥା ।'' ମହୀଧର ବାବୁ କହିଲେ । କାଲି ମୁଁ ପାରଳାଖେମୁଣ୍ଡି ଫେରିଯିବି । ମଝିରେ ଦୁଇଦିନ ରହିଲା । ଗୁରୁବାର ଦିନ ପୂଜା ହେବ । ତୁମେ ସଞ୍ଜ

ସରିକି ପରିଜନାଙ୍କୁ ଡାକିଆଣ । ପୂଜା ଉପଲକ୍ଷେ ଖାଦ୍ୟପେୟର ହିସାବ ଚୂଡ଼ାନ୍ତ କରିବା ।

ବାବୁଙ୍କ କଥା ଶୁଣି ସନାତନ ଚାଲିଗଲା ।

ସନାତନ ସିଧା ଚାଲିଲା ପରିଜନାଙ୍କୁ ଡାକିବା ପାଇଁ, ହେଲେ ଆର୍ମ ଚେୟାର ଉପରେ ସ୍ଥୂଳ ଶରୀରକୁ ପକେଇ ବାରମ୍ବାର ଗାୟତ୍ରୀ ଦେବୀଙ୍କ ଚିଠିକୁ ପଢ଼ିବାକୁ ଲାଗିଲେ ମହୀଧରବାବୁ ।

ଚିଠିଟିରେ ଲେଖାଥିଲା : କେତେ ଶୁଭ ମନାସି ମୁଁ କୋଳରେ କୁନୁକୁ ପାଇଥିଲି । ଇତି ମଧ୍ୟରେ ତାକୁ ଷୋଳ ବର୍ଷ ପୂରିଯିବ । ଯଦି ତା'ପାଇଁ ଷୋଳ ପୂଜାଟିଏ କରି ନଥିବ, ତେବେ କରିଦେବ ।

ଚିଠିଟିରେ ନା ଥିଲା ସମ୍ବୋଧନ ନା ଥିଲା ଇତି ଓ ଉପସଂହାର । ତଥାପି ସେଥିରେ ସ୍ପଷ୍ଟଭାବେ ବାରି ହୋଇ ପଡୁଥିଲା ଗାୟତ୍ରୀ ଦେବୀଙ୍କର ବାଇଗଣ ମଞ୍ଜିଭଳି ସେହି ଗୋଲ ଗୋଲ ଅକ୍ଷରଗୁଡ଼ିକ ।

ଅଫିସରେ ଚିଠିଟି ପାଇଲା ପରେ ସଙ୍ଗେ ସଙ୍ଗେ କଲିଙ୍ଗ୍ ବେଲ୍ ମାରିଥିଲେ ମହୀଧରବାବୁ । କଲିଙ୍ଗ ବେଲ୍‌ର ଶବ୍ଦ ଶୁଣି ପିଅନ ଜଣକ ଆସି ହାଜର ହୋଇଥିଲା । ସଙ୍ଗେ ସଙ୍ଗେ ମହୀଧର ବାବୁ କହିଥିଲେ, ''ମା'ଙ୍କୁ ଭିତରକୁ ଆସିବାକୁ କୁହ । ଆଉ ଦୁଇଟି କୋଲଡ୍ରିଂକ୍‌ସ୍ ମଧ୍ୟ ଆଣ ।''

ପିଅନଟି ଆଶ୍ଚର୍ଯ୍ୟ ହୋଇ ଚାହିଁ ରହିଥିଲା ମହୀଧରବାବୁଙ୍କ ଆଡ଼କୁ ।

''ଆରେ ଯାଅ, ଚାହିଁ ରହିଲ କ'ଣ ? ମାଆଙ୍କୁ ଭିତରକୁ ଆସିବାକୁ କୁହ ! ନା' ତୁମେ ଯିବା ଦରକାର ନାହିଁ । ମୁଁ ନିଜେ ଯାଉଛି ଭିତରକୁ ମାଆଙ୍କୁ ଡାକି ଆଣୁଛି ।

ବାବୁଙ୍କୁ ଚେୟାରରୁ ଉଠିବାର ଦେଖି ପିଅନ ଜଣକ କହିଲା,'' ବାବୁ ବାହାରେ ତ କେହି ନାହାନ୍ତି । କିଛି ସମୟ ପୂର୍ବରୁ ଜଣେ ମଳି ମୁଣ୍ଡିଆ ଲୋକଟିଏ ଆସିଥିଲା । ଆପଣ ସେତେବେଳେ ଅଫିସରେ ନଥିଲେ ମୋତେ ଚିଠିଟି ଦେଇ କହିଥିଲା ଆପଣଙ୍କୁ ଦେବାକୁ ।''

ପିଅନଟିର କଥା ଶୁଣି ପ୍ରକୃତିସ୍ଥ ହେଲେ ମହୀଧର ବାବୁ । ନିଜ ମନ ମଧ୍ୟରେ ଥିବା ଅସରନ୍ତି କୋହକୁ ଚାପିରଖି କହିଲେ,''ହଉ ତୁମେ ଯାଅ ।''

ପିଅନଟି ଚାଲିଯାଇଥିଲା ।

ଚେୟାର ଉପରେ ବସିପଡ଼ି ମହୀଧର ବାବୁ ସେତେବେଳେ ଭାବିଥିଲେ, ''ତେବେ ଗାୟତ୍ରୀ ନିଜେ ଆସି ନଥିଲା । ବିନା ଅଭିଯୋଗ ଫର୍ଦ୍ଦର ସଂକ୍ଷିପ୍ତ ଚିଠିଟିଏ କେବଳ ପଠେଇ ଦେଇଥିଲା ।

ଆଉସେହି ଚିଠିଟିରେ ଭରି ରହିଥିଲା ପୁଅ ପ୍ରତି ମା'ର ଦୀର୍ଘ ଦିନର ଶୁଭ କାମନା ।

ମହୀଧର ବାବୁ ଦୀର୍ଘ ନିଃଶ୍ୱାସ ଛାଡ଼ିଥିଲେ ସେତେବେଳେ । ତେବେ ଗାୟତ୍ରୀ ମନରେ କ'ଣ ତାଙ୍କ ପ୍ରତି ଟିକିଏ ହେଲେ ଦରଦ ନଥିଲା । ଅତିବେଶୀରେ ସେ ମଧ୍ୟ ତାଙ୍କୁ ପୂର୍ବ ଭଳି ସମ୍ବୋଧନ ସୂଚକ 'ମୋର ପ୍ରାଣର' ' ଅତି ଆପଣାର' କିମ୍ବା 'ମାନନୀୟେଷୁ'' ବୋଲି ସମ୍ବୋଧନ କରି ପାରିଥାନ୍ତା !

କାହିଁ ତା' ତ କଲାନି କିମ୍ବା ଚିଠିର ଶେଷରେ ତୁମର 'ଅତି ଆପଣାର' ବୋଲି ମଧ୍ୟ ଲେଖିଲାନି ।

ଏମିତି ଅନେକ କିଛି ସେତେବେଳେ ସେ ଭାବିଯାଉଥିଲେ । ତୋଡ଼ା ତୋଡା ଫାଇଲ୍ ପତ୍ରକୁ ଘାଣ୍ଟି ଘାଣ୍ଟି ସେ ମଧ୍ୟ ନିଜର ଅତୀତର ଫାଇଲ୍ ପତ୍ର ମନେ ପକାଉଥିଲେ ।

ମାତ୍ର ଅତୀତର ରୋମନ୍ଥନ ଓ ମାନସିକ ଫାଇଲରେ ଏକ ଟିପପ୍ଣୀ ଦେବାକୁ ଯାଇ ସେ ସିଦ୍ଧାନ୍ତ କରିନେଇଥିଲେ ଯେ କୁନୁର ଷୋଳ ପାଲା କରିବାକୁ । ସେଇଥିପାଇଁ କାଳ ବିଳମ୍ବ ନକରି ସେ ଧାଇଁ ଆସିଥିଲେ ଭୁବନେଶ୍ୱରକୁ, ପୂଜାର ଆୟୋଜନ କରିବାକୁ ।

ଗାୟତ୍ରୀକୁ ଡାକିଲେ କ'ଣ ସେ ପୁଅର ପୂଜାକୁ ଆସିବ ନାହିଁ । କିନ୍ତୁ କେଉଁ ମୁହଁରେ ସେ ତାକୁ ଡାକିବେ । ଯିଏ ଦୀର୍ଘ ଆଠବର୍ଷ ହେଲା ତାଙ୍କୁ ଛାଡ଼ି ଚାଲିଯାଇଛି, ଗଲାବେଳେ ପଦଟିଏ କଥା ମଧ୍ୟ କହି ନାହିଁ ବା ତାଙ୍କ ଉଦ୍ଦେଶ୍ୟରେ ଚିଠିଟିଏ ମଧ୍ୟ ଛାଡ଼ି ଯାଇନାହିଁ, ତାକୁ ସେ କିପରି ଯାଇ କହିବେ ଘରକୁ ଆସିବା ପାଇଁ ।

ପୁଣି ଗାୟତ୍ରୀ ଭଳି ମୌଳିକ ଚିନ୍ତା ସମ୍ପନ୍ନା ନାରୀ କ'ଣ ତାଙ୍କ ଅନୁରୋଧକୁ ସହଜରେ ମାନି ନେବ, ପୁଣି ଫେରି ଆସିବ-

ଏମିତି ଭାବୁଭାବୁ ମହୀଧର ବାବୁଙ୍କର ମନେ ପଡ଼ିଲା ସେ ଘରେ ଗାୟତ୍ରୀଙ୍କ ସହିତ ଘଟୁଥିବା ପ୍ରତିଦିନ କଳି କଜିଆର କେତୋଟି ଦୃଶ୍ୟ... । ସବୁ କଳିକଜିଆରେ ମା' ପଟରେ ଥାଏ ପୁଅ କୁନୁ । ପାଞ୍ଚ ଛଅ ବର୍ଷର ହୋଇଥାଏ ସେତେବେଳେ ତାକୁ । ସବୁବେଳେ ସେ କହୁଥାଏ, ''ବାପା, ମମି ଉପରେ ତୁମେ ଏମିତି ରାଗୁଛ କାହିଁକି ? ମମିର ତ କୌଣସି ଦୋଷ ନାହିଁ ।''

ସେତେବେଳେ ପିଲାଟିର ଉପରେ ତାଙ୍କ ମନରେ ଯାବତୀୟ ରାଗ ଜମିଆସୁଥାଏ । କେଡ଼େ ବକଟେ ମେଞ୍ଚଡ଼ ପିଲାଟିଏ, ସେ ପୁଣି ମା' ପଟ ହେଉଛି ?

ମାତ୍ର ଯେଉଁଦିନ ଅଫିସରୁ ଫେରି ଗାୟତ୍ରୀଙ୍କ ସହିତ ଶେଷ କଳି ହୋଇଥିଲା ସେଦିନଟିକୁ ଭୁଲି ପାରିନଥାନ୍ତି ମହୀଧରବାବୁ । ସେ ଦିନର ଘଟଣାଟି ଆଜି ଯେମିତି ଅତି ନିଖୁଣ ଭାବରେ ତାଙ୍କ ଆଗରେ ନାଚି ଉଠୁଛି । ସତେ ଯେମିତି ସେ ସଦ୍ୟ ତହସିଲ୍ ଅଫିସରୁ ଫେରି ଆସିଛନ୍ତି ନିଜର ବଙ୍ଗଲୋ ମଧ୍ୟକୁ ।

ଅଫିସ୍ ଗାଡ଼ିରୁ ଓହ୍ଲାଇ ସେ ଯେମିତି ବୈଠକ ଘର ମଧ୍ୟକୁ ପ୍ରବେଶ କରିଛନ୍ତି, ସେମିତି ଗାୟତ୍ରୀ ଦେବୀ ସେଠାକୁ ଆସି ବଡ଼ ପାଟିରେ ଆରମ୍ଭ କଲେ,''ମୁଁ ଆଜି ଜାଣିବାକୁ ଚାହେଁ ତହସିଲ୍‌ଦାରଙ୍କ ଅଫିସ ଚାମ୍ବର ମଧ୍ୟରେ ଆଜି କେଉଁ ମହିଳା ଜଣକ ଦୀର୍ଘ ସମୟ ପାଇଁ ବସି ରହିଥିଲେ । ସେହି ମହିଳା ଜଣଙ୍କର ତହସିଲ୍‌ଦାରଙ୍କ ସହିତ କି କାମ ଥିଲା ?''

ଗାୟତ୍ରୀଙ୍କ କଥାଗୁଡ଼ିକ ଗୁଳିବିଦ୍ଧ ସୈନିକର ଯନ୍ତ୍ରଣା ଭଳି ଲାଗିଥିଲେ ମଧ୍ୟ ତହସିଲ୍‌ଦାର ମହୀଧର ପଟ୍ଟନାୟକ ସେଦିନ ନିଜକୁ ସଞ୍ଜତ କରି ନେଇଥିଲେ । ଅତି ନମ୍ର ଭାବରେ କହିଥିଲେ, ''ଗାୟତ୍ରୀ, ତୁମେ କ'ଣ କହିବାକୁ ଚାହଁ ?''

''କ'ଣ ବାବୁ ମୋ କଥାକୁ ବୁଝି ପାରୁ ନାହାଁନ୍ତି ? ମୋର ପ୍ରଶ୍ନ ଅତି ସରଳ ! ସେହି ମହିଳା ଜଣକ ଆଜି କାହିଁକି ବାବୁଙ୍କ ପାଖକୁ ଆସିଥିଲେ ?''

ଗାୟତ୍ରୀ କେଉଁ ମହିଳା କଥା କହୁଛନ୍ତି ମହୀଧରବାବୁ କିଛି ବୁଝି ପାରିଲେ ନାହିଁ । ସେ ଆରମ୍ଭ କଲେ, ''ମୋର ଆଜି ଗ୍ରିଏଭାନ୍‌ସ ସେଲ୍‌ଥିଲା । କେତେ ଭଦ୍ରବ୍ୟକ୍ତି ଓ ଭଦ୍ର ମହିଳା ମୋତେ ସାକ୍ଷାତ କରିଥିଲେ । ତୁମେ କେଉଁ ମହିଳା କଥା କହୁଚ ନ କହିଲେ ମୁଁ କେମିତି ଜାଣିବି ।''

ନିଜର ସ୍ୱରକୁ ଟିକିଏ ଗମ୍ଭୀର କରି ଗାୟତ୍ରୀ ଦେବୀ କହିଲେ,''ମୁଁ ନମିତା କଥା ପଚାରିବାକୁ ଚାହେଁ । ତୁମର ଅତୀତର ପ୍ରେମିକା ନମିତା... ସେ କାହିଁକି ସେଠାକୁ ଆସିଥିଲା ?''

ଗାୟତ୍ରୀଙ୍କ କଥାଗୁଡ଼ିକ ଅସହ୍ୟ ହେଲେ ମଧ୍ୟ ସବୁ ସହିନେଲେ ମହୀଧରବାବୁ । ହସି ହସି କହିଲେ,''ଗାୟତ୍ରୀ, ନମିତା ମୋର ପ୍ରେମିକା କେବେ ନଥିଲା, କିମ୍ବା ମୁଁ କେବେ ନମିତାର ପ୍ରେମିକ ନଥିଲି । କଲେଜ କ୍ୟାରିୟରରେ ଆମେ ଦୁହେଁ ସହପାଠୀ ଥିଲୁ । ଏକଥା ମୁଁ ତୁମ ମୁଣ୍ଡରୁ ହଜାର ଥର କାଢ଼ିବାକୁ ଚେଷ୍ଟା କଲେ ମଧ୍ୟ ତୁମ ସନ୍ଦେହର ଦିଗ୍‌ବଳୟ ମଧ୍ୟରେ ମୁଁ ରହିଛି । ଏହା ହିଁ ମୋର ଦୁଃଖ ? ଏମିତି ଧାରଣାଟିଏ ତୁମ ମୁଣ୍ଡରେ କିଏ କେମିତି ଭର୍ତ୍ତି କଲା ମୁଁ ଜାଣେ ନାହିଁ । ତାହା ହିଁ ମୋର ଦୁର୍ଭାଗ୍ୟ ।''

ମହୀଧରବାବୁ ଭାବିଥିଲେ ଗାୟତ୍ରୀ ତାଙ୍କର ଏଇ କେତେକ କଥାଶୁଣି ନୀରବ ରହିବେ । ମାତ୍ର ଏକ ଆହତ ବାଘୁଣୀ ଭଳି ଚିତ୍କାର କରି ଗାୟତ୍ରୀ ଦେବୀ କହିଲେ,''ତୁମର ଦୁର୍ଭାଗ୍ୟ କାହିଁକି ହେବ, ସୌଭାଗ୍ୟଯେ ତହସିଲ୍‌ଦାର୍ ବାବୁଙ୍କ ଚାମ୍ବରରେ ଆଜି ବହୁ ପରିଚିତା ମହିଳା ଜଣକ ଦୀର୍ଘ ସମୟ ବସି ରହିଥିଲେ । କ'ଣ ବାବୁ ଟିକିଏ ପ୍ଲେଜରଟ୍ରିପ୍‌ରେ ବୁଲି ଯାଇନାହାଁନ୍ତି !''

''ବନ୍ଦକର, ବନ୍ଦକର କହି ଗର୍ଜି ଉଠିଲେ ତହସିଲ୍‌ଦାର ମହୀଧର ପଟ୍ଟନାୟକ । ତୁମେ ମୋତେ କ'ଣ ବୋଲି ଭାବୁଛ ? ସରକାରୀ ଦାୟିତ୍ୱ ତୁଲାଇଲା ବେଳେ ମୋ ପାଖକୁ ଅନେକ ଲୋକ ଆସନ୍ତି । ସେମିତି ନମିତା ଆସିଥିଲା, କାହିଁକି ଜାଣ ? ତା'ର ସ୍ୱାମୀର ଡେଥ୍ ସାର୍ଟିଫିକେଟ୍ ନେବା ପାଇଁ । ଘରେ ବର୍ଷକର ପୁଅଟିଏ । ଡେଥ୍ ସାର୍ଟିଫିକେଟ୍ ଦାଖଲ କଲେ ସ୍ୱାମୀଙ୍କ ପାଉଣାପତ୍ର ତାକୁ ମିଳିବ ।''

ମହୀଧର ବାବୁ କ'ଣ ଗପିଯାଉଥିଲେ ତାହା ଶୁଣିବାକୁ ଗାୟତ୍ରୀଙ୍କର ଆଉ ଧୈର୍ଯ୍ୟ ନଥିଲା । ସେ ବହୁ ଆଗରୁ ଘରଛାଡ଼ି ଚାଲିଯିବାକୁ ମନସ୍ଥ କରିଥିଲେ । ତେଣୁ ଆଟାଚି ଧରି ବାହାରି ପଡ଼ିଲେ । କହିଲେ,'ତୁମ ପୁଅ ତୁମ ପାଖରେ ରହିଲା । ମୁଁ ଚାଲିଲି ।''

ବାପା ମାଆଙ୍କର କଳି ଆଠ ବର୍ଷର ପୁଅ କୁନୁ ଦେଖୁଥିଲା । ସେ ଏଥରକ ନୀରବରେ ସବୁ ଶୁଣି ଯାଉଥିଲା । ପୂର୍ବଭଳି ମା' ସପକ୍ଷରେ କହି ବାପାଙ୍କୁ ଦୋଷାରୋପ ମଧ୍ୟ କଲାନାହିଁ । ମା' ଗଲାବେଳେ ମା'ଙ୍କୁ ରହିବାକୁ ମଧ୍ୟ କହିଲା ନାହିଁ ।

ଏଥରକ କୁନୁର ଭିନ୍ନ ଆଚରଣ ମଧ୍ୟ ମହୀଧରବାବୁଙ୍କୁ ବଡ଼ ଆଶ୍ଚର୍ଯ୍ୟ ଲାଗିଥିଲା । ସେ ଭାବିଥିଲେ ପିଲାଟି ମା'କୁ ପୂର୍ବଭଳି ଅଟକାଇଲେ ସେ ରହିବ । ମାତ୍ର ତାହା ହେଲାନି ।

ସେଦିନର ସେହି ଦୃଶ୍ୟ ଭାବୁଭାବୁ ମହୀଧର ବାବୁଙ୍କ ଆଖିକୁ ନିଦ ଆସି ଯାଇଥିଲା ।

ବାବୁ କ'ଣ ଶୋଇ ପଡ଼ିଲେକି ? ସନାତନର ଡାକରାରେ ମହୀଧର ବାବୁ ଉଠିପଡ଼ିଲେ ।

ସକାଳୁ ସକାଳୁ ମହୀଧର ବାବୁଙ୍କ ମନଟା କାହିଁକି ଖରାପ ଲାଗୁଥାଏ । ନିଜକୁ ନିଜେ ଯେତେ ବୁଝାଇଲେ ମଧ୍ୟ ଅମାନିଆ ମନ ମଧ୍ୟ ବୁଝି ନଥାଏ ।

ପୁଅର ଷୋଳ ପାଲା ହେବ । ସକାଳୁ ପାରଳାଖେମୁଣ୍ଡି ଛାଡ଼ିବାକୁ ପଡ଼ିବ ଓ ସନ୍ଧ୍ୟା ସରିକି ଭୁବନେଶ୍ୱରରେ ପହଞ୍ଚିବାକୁ ହେବ । ସବୁ ଠିକ୍ ଠାକ୍ ହୋଇଯାଇଛି । ଅଫିସ ଗାଡ଼ିଟି ମଧ୍ୟ ରିକ୍ୱୁଜିସନ୍ ସରିଛି ।

ପୂଜାକୁ ସମସ୍ତେ ଆସିବେ । ମା'ର ଚିଠି ଉପରେ ଆଜି ପୁଅର ଷୋଳପାଲା ହେଉଛି, ଅଥଚ ସେ ଯିବନି ।

ଏକଥା ଚିନ୍ତାକରି ପାରିଲେନି ମହୀଧରବାବୁ ।

ମନ ହେଉଥିଲା ସେ ନିଜେ ଯାଇଁ ଗାର୍ଲସ ସ୍କୁଲରେ ଗାୟତ୍ରୀକି କହି ଦେଇ ଆସିଥାନ୍ତେ । ଯଦି ତା'ର ଆପତ୍ତି ନଥାନ୍ତା, ତେବେ ନିଜ ଗାଡ଼ିରେ ମଧ୍ୟ ନେଇ ଯାଇଥାନ୍ତେ ...

ଏମିତି ଅନେକ କଥା ଗୋଟିଏ ପରେ ଗୋଟିଏ ଆସି ମହୀଧରବାବୁଙ୍କ ମନକୁ ରୋମନ୍ଥନ କରୁଥିଲା । ମନେ ମନେ ସେ ଚିନ୍ତା କରୁଥିଲେ, ଆଉ ନିଜ ସହିତ ନିଜେ କେତେ ବା ସଂଳାପ କରିବେ !

ଏହି ସମୟରେ କଲିଂଗ ବେଲ୍‌ଟା ବାଜି ଉଠିଲା । ଗାଡ଼ି ଆସିଯାଇଛି ଭାବି ମହୀଧରବାବୁ ନିଜେ ବାହାରକୁ ଉଠିଗଲେ ।

ଦେଖିଲେ ଡ୍ରାଇଭର ଠିଆ ହୋଇଛି । ପଚାରିଲେ ,''କ'ଣ ଖାଲି ଖାଲି ଆସିଲୁ ?''

ଗାଡ଼ି ଯେତେ ଷ୍ଟାର୍ଟ କଲେ ମଧ୍ୟ ଷ୍ଟାର୍ଟ ହେଉନି । ଅପରାଧୀ ଭଳି ଡ୍ରାଇଭର ଜଣକ କହିଲା ।

''ଆରେ, ଏଥିରେ ବ୍ୟସ୍ତ ହେବାର କ'ଣ ଅଛି ? ଗାଡ଼ି ନହେଲା ନାହିଁ, ମୁଁ ପଲାସା ପର୍ଯ୍ୟନ୍ତ ବସ୍‌ରେ ଚାଲି ଯାଉଛି । ସନ୍ଧ୍ୟା ବେଳକୁ ଭୁବନେଶ୍ୱରରେ ପହଞ୍ଚିଯିବି ଯେ !''

ଏହା କହି ମହୀଧରବାବୁ ଘର ଭିତରକୁ ଚାଲିଗଲେ । ଛୋଟିଆ ଭିଆଇପି ଆଟାଚି ହାତରେ ଧରି ବସ୍‌ଷ୍ଟାଣ୍ଡ ଅଭିମୁଖେ ବାହାରି ପଡ଼ିଲେ । ବ୍ରହ୍ମପୁର ଅଭିମୁଖେ ଏକ୍ସପ୍ରେସ୍ ବସ୍‌ଟିଏ ଠିଆ ହୋଇଥିଲା । ବସ୍ କଣ୍ଡକ୍‌ଟର ମହୀଧରବାବୁଙ୍କୁ ଆଗରୁ ଜାଣିଥିଲା । ଭି.ଆଇ.ପି ସିଟ୍‌ରେ ବାବୁଙ୍କୁ ବସାଇ ଦେଲା ।

ଚାହୁଁ ଚାହୁଁ ଦେଢ଼ଘଣ୍ଟା ମଧ୍ୟରେ ବସ୍‌ଟି ପଲାସାଠାରେ ପହଞ୍ଚିଗଲା । ଷ୍ଟେସନରେ ପ୍ରବେଶ କରୁ କରୁ ଭୁବନେଶ୍ୱର ଅଭିମୁଖେ କୋଣାର୍କ ଏକ୍ସପ୍ରେସ୍ ଛାଡ଼ିବାର ଘୋଷଣା କାନରେ ପଡ଼ିଲା । କଣ୍ଡକ୍ଟରକୁ କହି ସେ ସିଧା ଏକ ଦ୍ୱିତୀୟ

ଶ୍ରେଣୀ ସ୍ଲିପର କୋଚରେ ପ୍ରବେଶ କଲେ ଓ କୋଚର ଗୋଟିଏ କୋଣରେ ବସି ପଡ଼ିଲେ ।

ହଠାତ୍ ତାଙ୍କର ନଜର କୋଚର ବିପରୀତ କୋଣରେ ବସିଥିବା ଜଣେ ଭଦ୍ର ମହିଳାଙ୍କ ଉପରେ ପଡ଼ିଲା । ନିଜ ମନ ମଧ୍ୟରେ ଥିବା ବହୁଦିନର ଆବେଗକୁ ଚାପି ନରଖିପାରି ସେ କହି ପକାଇଲେ, 'ଗାୟତ୍ରୀ' ତୁମେ ?''

ଭଦ୍ର ମହିଳାଜଣକ ନିଜକୁ ଖୁବ୍ ଅପ୍ରତିଭ ମଣୁଥିଲେ । କ'ଣ କହିବେ ନକହିବେ ଭାବୁଥିଲା ବେଳେ ମହୀଧରବାବୁ ନିଜକୁ ସଂଜତ କରି ପୁଣି ଆରମ୍ଭ କଲେ,''ଆପଣ... ?''

ଗାୟତ୍ରୀ ଦେବୀଙ୍କପାଟିରୁ ଆପେ ଆପେ ବାହାରି ଆସିଲ ''ହଁ ମୁଁ.. ।''

ସେତେବେଳକୁ ଛୁକ୍ ଛୁକ୍- ଶବ୍ଦକରି ଟ୍ରେନ୍‌ଟି ଆଗେଇ ଚାଲିଥିଲା । ସ୍ୱାମୀ ଓ ସ୍ତ୍ରୀଙ୍କ ମଧ୍ୟରେ କିଛି ସମୟ ପାଇଁ ନୀରବତାର ପରଦା ଆପେ ଆପେ ପଡ଼ିଗଲା ।

ମହୀଧର ବାବୁ ଚାହିଁ ରହିଥିଲେ ଗାୟତ୍ରୀଙ୍କ ମୁହଁକୁ । ପୂର୍ଣ୍ଣଚାନ୍ଦ ଭଳି ମଥାରେ ବଡ ସିନ୍ଦୁର ଟୋପାଟି ସେମିତି ମାନୁଥିଲା । ମାତ୍ର ଅତୀତର ପୂରି ରହିଥିବା ଗାଲ ଦୁଇଟି ଆଉ ନଥିଲା । ଖୁବ୍ ଖାଲୁଆ ଖାଲୁଆ ଜଣାପଡୁଥିଲା । ମୁହଁର ଗୋରା ତିକ୍ ତିକ୍ ଚମଡାଟି ଖୁବ୍ ମଳିନ ଓ ଖୁବ୍ ଫିକା ଜଣାପଡୁଥିଲା ।

ଇସ୍, ଗାୟତ୍ରୀ ଏଇ କେତେଟା ବର୍ଷ ମଧରେ ବୁଢ଼ୀ ହୋଇଗଲେଣି !

ଅଥଚ ସେ ନିଜେ ! ଅଫିସର ଫ୍ୟାନ୍ ତଳେ, ଅଫିସର ଆଦବ କାଇଦା ମଧରେ ଅନେକ ଅଶାନ୍ତି ମଧରେ ମଧ ଯୁବକ ଭଳି ଦେଖାଯାଉଛନ୍ତି !!

ନିଜ ମନ ମଧରେ ଥିବା ଅହଂଚେତନାର ରୁଦ୍ଧଦ୍ୱାର ଭାଙ୍ଗି ମହୀଧର ପଟ୍ଟନାୟକଙ୍କ ପୁରୁଷତ୍ୱ ଚିତ୍କାର କରି ଉଠିଲା । ବିବାହବେଦୀରେ ଅଗ୍ନିକୁ ସାକ୍ଷୀରଖି ଯେଉଁନାରୀକୁ ସେ ଚିରଦିନ ପାଇଁ ସୁରକ୍ଷା ଦେବେ ବୋଲି ଶପଥ କରିଥିଲେ, ଯା'ର ଦୋଷକୁ କ୍ଷମାଦେବେ ବୋଲି ବୈଦିକମନ୍ତ୍ରର ତାଳେ ତାଳେ ଅଙ୍ଗୀକାରବଦ୍ଧ ହୋଇଥିଲେ, ଆଜି ସେଇ ନାରୀପ୍ରତି ସେ କରିଛନ୍ତି କ'ଣ ?

ଆଉ ଆଜି..

ଆଜି ପୁଣି କେଉଁ ଅଧିକାରରେ ନିଜର ଆପଣାର ପରି ପଚାରୁଛନ୍ତି ! ଗାୟତ୍ରୀ, ତୁମେ ବୋଲି !

ମହୀଧର ବାବୁ ନିଜକୁ ପ୍ରକୃତିସ୍ଥ କଲେ । ସେତେବେଳକୁ ଗାଡି ଆସି ଖୋର୍ଦ୍ଧା ଷ୍ଟେସନ ଧରିଲାଣି । ଆଉ କେତୋଟି ମୁହୂର୍ତ୍ତ ଯଦି ସେ ନୀରବ ରହିବେ, ତେବେ ଅତି ପାଖରେ ମିଳିଥିବା ଗାୟତ୍ରୀଙ୍କୁ ପୁଣି ସବୁଦିନ ପାଇଁ ହଜେଇ ବସିବେ ।

ଦୀର୍ଘ ନୀରବତାକୁ ଭାଙ୍ଗି ମହୀଧର ବାବୁ ପୁଣି ଆରମ୍ଭ କଲେ, ''ଆପଣ.... ?''

ଶୁଖିଲା ମୁହଁରେ ଟିକିଏ ହସ ଫୁଟାଇ ଗାୟତ୍ରୀ କହିଲେ, ''ଆପଣ କ'ଣ କହିବାକୁ ଚାହୁଁଥିଲେ ?''

'ନା', ସେମିତି କିଛି ନୁହେଁ,'' ମହୀଧର ବାବୁ ଉତ୍ତର ଦେଲେ ।

ଗାୟତ୍ରୀ ନୀରବ ରହିଲେ ।

ପୁଣି ମହୀଧର ବାବୁ ପଚାରିଲେ, ''କ'ଣ ଭୁବନେଶ୍ୱରରେ କିଛି କାମ ଥିଲା ?''

''ହଁ, ଡି.ପି.ଆଇଙ୍କ ନିକଟରେ ଅଛି । ପାରଳାଖେମୁଣ୍ଡିରେ ମୋର ଦେହ ଭଲ ରହୁନି । ଜଳବାୟୁ ପରିବର୍ତ୍ତନ କରିବାକୁ ଡାକ୍ତର କହିଛନ୍ତି । ଅନେକ ସମୟରେ ଡାକ୍ତରଙ୍କ କଥାକୁ ହସି ଉଡାଇ ଦେଇଛି । ଏବେ ମାମୁ ବୁଢ଼ା ହୋଇଗଲେଣି । ତାଙ୍କର ଦେଖାଶୁଣା କରିବାକୁ କେହି ନାହାଁନ୍ତି । ମଝିରେ ମଝିରେ ରୋଗରେ ପଡୁଛନ୍ତି । ବହୁ ଅଭିମାନ କରି ଚିଠି ଦେଉଛନ୍ତି । ଭାବିଛି ଡି.ପି.ଆଇ.ଙ୍କୁ କହି ଭୁବନେଶ୍ୱରର କୌଣସି ଗାର୍ଲସ ହାଇସ୍କୁଲକୁ ବଦଳି ହୋଇ ଆସିବି ।'' ଗାୟତ୍ରୀ ଦେବୀ କହିଲେ ।

''ଆଗରୁ କ'ଣ କେବେ କହିଥିଲ ।'' ମହୀଧର ବାବୁ ପଚାରିଲେ ।

'ଅନେକ ଥର' ଗାୟତ୍ରୀଦେବୀ ଉତ୍ତର ଦେଲେ ।

''କିଛି ଫଳ ହେଲା ?''

''ହୋଇଥିଲେ ମୋତେ ଆଉ ଯିବାକୁ ପଡନ୍ତା କାହିଁକି ? ଯାହାକୁ କହିଲେବି ସମସ୍ତେ ଶୁଣି ନଶୁଣିଲାପରି ହେଉଛନ୍ତି । ଚାରିଆଡେ ତ ଅମଲାମାନଙ୍କର ଦାଉ । ଏଥରକ ଭାବିଛି ନୂଆ କରି ଯୋଗ ଦେଇଥିବା ଦକ୍ଷ ପ୍ରଶାସକ ଡି.ପି.ଆଇଙ୍କୁ କହିବି । ଶୁଣୁଛି ସେ ସର୍ବଭାରତୀୟ ସେବାରୁ ଆସିଛନ୍ତି । ସମସ୍ତଙ୍କ ଭଲମନ୍ଦ ବୁଝୁଛନ୍ତି ।'' ଏକ ଦୀର୍ଘ ନିଶ୍ୱାସ ପକାଇ ଗାୟତ୍ରୀ ଦେବୀ କହିଲେ ।

ଗାୟତ୍ରୀ ଦେବୀଙ୍କ ପାଟିରୁ କଥା ସରୁନସରୁଣୁ ମହୀଧର ବାବୁ ଆରମ୍ଭ କଲେ, ''ଆପଣଙ୍କ I.A.S. ଡି.ପି.ଆଇ ଜଣକ ମୋର କଲେଜ ପାଠପଢ଼ା ବନ୍ଧୁ । ଆପଣ ଯଦି କିଛି ନଭାବିବେ ତେବେ ମୁଁ ତାଙ୍କୁ କହିବି । ହାତେ ହାତେ ଅର୍ଡର ମିଳିଯିବ ।''

''ନା, ଆପଣ କହିବେନି । ଦୀର୍ଘ ଆଠ ବର୍ଷ ହେଲା ମୁଁ ମୋର ପରିଚୟ ହଜାଇ ବସିଛି । ଅନେକ ଖୋଜିଲେ ମଧ୍ୟ ଦିନକୁ ଦିନ ନିଜର ପରିଚୟ ଫିକା ପଡି ଆସୁଛି ।''

ଏକ ଦୀର୍ଘ ନିଃଶ୍ୱାସ ବାହାରି ଆସିଲା । ଗାୟତ୍ରୀ ଦେବୀଙ୍କ କଣ୍ଠ ବାଷ୍ପରୁଦ୍ଧ ହେଲା ।

ଗାୟତ୍ରୀଙ୍କ ମାନସିକ ଅବସ୍ଥା ବୁଝି ପାରିଲେ ମହୀଧର ବାବୁ । ପରିସ୍ଥିତିକୁ ଚଳାଇ ନେବାକୁ ଯାଇଁ କହିଲେ, ''ଆପଣ ଯଦି ମୋ କହିବାକୁ ପସନ୍ଦ କରୁ ନାହାଁନ୍ତି ତେବେ ମୁଁ କହିବିନି ।''

ଗାୟତ୍ରୀ ଦେବୀ କହିଲେ, ''ପସନ୍ଦ କରିବା ନ କରିବା ଅନ୍ୟକଥା । ମାତ୍ର ମୋ ମନରେ ଆଶଙ୍କା ଆସୁଛି ଯଦି ଆପଣଙ୍କର ସେହି ଆଇ.ଏ.ଏସ୍ ବନ୍ଧୁ ମୋର ପରିଚୟ ଆପଣଙ୍କୁ ପଚାରିବେ, ସେତେବେଳେ ଆପଣ ମୋର ପରିଚୟ କ'ଣ ବା ଦେବେ । ଆପଣଙ୍କ ସହିତ ମୋର ସମ୍ପର୍କ ପ୍ରଶ୍ନ ଯଦି ଉଠେ ଆପଣ କ'ଣ ବା କହିବେ ? ବରଂ ଏକ ପରିଚୟହୀନ ମଣିଷଟି ଭଳି ମୁଁ ମୋର କାମ କରେଇ ନେବାକୁ ଚେଷ୍ଟାକରିବି ।''

ଅଲକ୍ଷରେ ଗାୟତ୍ରୀଙ୍କ ଆଖିରୁ ଦୁଇବୁନ୍ଦା ଲୁହ ଝରିଆସିଲା ।

ହଠାତ୍ ଗାଡିଟିର ରହିବାର ଶବ୍ଦ ହେଲା ।

ଭୁବନେଶ୍ୱର ଷ୍ଟେସନ ଆସିଯାଇଛି ଜାଣି କମ୍ପାର୍ଟମେଣ୍ଟର ସମସ୍ତ ପାସେଞ୍ଜରଙ୍କ ଭଳି ଗାୟତ୍ରୀ ଦେବୀ ଓ ମହୀଧର ବାବୁ ନିଜ ନିଜର ଜିନିଷପତ୍ର ଧରି ବାହାରି ଆସିଲେ ।

ଗାଡିରୁ ଓହ୍ଲାଉ ଓହ୍ଲାଉ ଗାୟତ୍ରୀ ଦେବୀଙ୍କ ଆଟାଚି ଧରି ପକାଇଲା ମଦନ । କହିଲା ''ମା, ମାମୁଁ ଗାଡି ପଠାଇଛନ୍ତି ।''

''ମାମୁଁଙ୍କୁ ତ ଗାଡି ପଠାଇବା ପାଇଁ ମୁଁ ପୂର୍ବରୁ କହି ନଥିଲି । ମାମୁ କେମିତି ଜାଣିଲେ ଯେ ଆଜି ମୁଁ ଏ ଗାଡିରେ ଆସୁଛି ବୋଲି ।'' ''ଗାୟତ୍ରୀ ଦେବୀ କହିଲେ ।

ମଦନ କହିଲା, ''ମାମୁଁଙ୍କ କଥା କ'ଣ ଜାଣି ନାହାନ୍ତି ମା । ମଝିରେ ମଝିରେ ସେ ପାରଳାଖେମୁଣ୍ଡିର ଆପଣଙ୍କ ସ୍କୁଲକୁ ଫୋନ କରନ୍ତି । ଆପଣଙ୍କ ଭଲମନ୍ଦ ବୁଝନ୍ତି । କାଳେ ଆପଣ ବିରକ୍ତ ହେବେ ସେଥିପାଇଁ ତାଙ୍କ ଫୋନ ବିଷୟରେ ଆପଣଙ୍କୁ ନଜଣାଇବା ପାଇଁ ପ୍ରଧାନଶିକ୍ଷୟିତ୍ରୀଙ୍କୁ କହିଥାନ୍ତି ।''

ଗାୟତ୍ରୀ ଦେବୀ ତାଙ୍କର ନିରସ ମୁହଁରେ ଟିକିଏ ହସର ଉତରି ଟାଣି କହିଲେ, ''ପିଲାଟି ବେଳୁ ମାମୁଁଙ୍କ ମନରେ ମୋ ପ୍ରତି ଯେଉଁ ସ୍ନେହ ଥିଲା, ଦେଖୁଚି ଏବେବି ସେମିତି ଅଛି । ସେଥିରେ ଟିକେ ଉଣା ପଡିନି ।''

ଖାଲି ସେତିକି ମା ! ଆଜି ଆପଣ ଆସୁଛନ୍ତି ବୋଲି ମାମୁଁ ଯେମିତି ଟେଲିଫୋନରୁ ଜାଣିଛନ୍ତି, କେତେ ଖୁସି ସିଏ ! ମୋତେ ବାରମ୍ବାର କହୁଥାନ୍ତି, ''ମଦନ, ଠିକ୍ ସମୟରେ ଗାଡି ପାଖରେ ଯାଇଁ ପହଞ୍ଚିବୁ । ମା'କୁ ମୋର ଯେପରି ତା' ଜିନିଷ ପତ୍ର ଆଣିବାକୁ ବିଶେଷ କଷ୍ଟ ନହୁଏ, ସେଥିପ୍ରତି ଦୃଷ୍ଟି ଦେବୁ । ମା' ମୋର ଡ୍ରାଇଭିଂକୁ ଭାରି ଭଲପାଏ । ଯଦି ନିଜେ ଗାଡି ଚଳାଇ ଆସିବାକୁ କୁହେ, ତେବେ ମନା କରିବୁନି ।''

''ଓଃ, ମାମୁଁ ତେବେ ମୋ ଡ୍ରାଇଭିଂ କଥା ମନେ ରଖିଛନ୍ତି ! ନା' ମଦନ ଏବେ ମନରେ ମୋର ଆଉ ଡ୍ରାଇଭିଂ କରିବାକୁ ଇଚ୍ଛା ନାହିଁ । ଯେକୌଣସି ଗାଡିକୁ ଡ୍ରାଇଭିଂ କରି ଲକ୍ଷ୍ୟସ୍ଥଳରେ ପହଞ୍ଚାଇବା ଯେ କେତେକଷ୍ଟ ତାହା ଆଜି ମୋର ଏ ପରିଣତ ବୟସରେ ମୁଁ ହାଡେ ହାଡେ ଅନୁଭବ କରୁଛି ।''

ଗାୟତ୍ରୀଙ୍କ ପଛେ ପଛେ ରହି ମହୀଧରବାବୁ ଗାୟତ୍ରୀଙ୍କର କଥା ଉପଭୋଗ କରୁଥାନ୍ତି । ସେଥିପ୍ରତି ଗାୟତ୍ରୀଙ୍କ ନଜର ନାହିଁ । ଜଣେ ପୋଖତ ଶିକ୍ଷୟିତ୍ରୀ ଯେ ଶିଶୁ ସୁଲଭ ଚିତ୍ତରେ ଜଣେ ଡ୍ରାଇଭରକୁ ଡ୍ରାଇଭିଂ ଜୀବନର ଜୀବନ ଦର୍ଶନ ବୁଝାଇ ପାରନ୍ତି, ତାହାଥିଲା ତାଙ୍କ ଚିନ୍ତାର ବାହାରେ ।

କିଛିକ୍ଷଣ ପରେ ଡ୍ରାଇଭର ଓ ଗାୟତ୍ରୀ ଦେବୀ ଆସି ଗାଡି ପାଖରେ ପହଞ୍ଚିଲେ । ଡ୍ରାଇଭର ଭି.ଆଇ.ପି ଆଟାଚିଟିକୁ ଗାଡିର ଡିକିରେ ରଖିଦେଲା । ପଛ ଦ୍ୱାର ଖୋଲି ଧରିଲା । ଗାୟତ୍ରୀ ଦେବୀ ଦ୍ୱାର ଦେଇ ଗାଡି ଭିତରକୁ ପଶୁ ପଶୁ ଆଗରେ ଏକ ଅପରାଧୀ ଭଳି ମୁଣ୍ଡ ନୁଆଁଇ ନୀରବରେ ଠିଆ ହୋଇଥିବା ମହୀଧର ବାବୁଙ୍କୁ ଦେଖିପାରିଲେ ।

ଏପରି ଦୃଶ୍ୟ ଦେଖି ଗାୟତ୍ରୀଙ୍କ ମନରେ ଭାବାନ୍ତର ଆସିଲା । ଗାଡିରୁ ବାହାରି ଆସିଲେ । ମନ ମଧ୍ୟରେ ଉଙ୍କି ମାରୁଥିବା ଅଜସ୍ର ଦୁଃଖକୁ ଚାପି ରଖି ହସି ହସି ପଚାରିଲେ, ''ଆପଣଙ୍କର ଗାଡି କ'ଣ ଆସିନାହିଁ ?''

'ନା', ମହୀଧର ବାବୁ ଉତ୍ତର ଦେଲେ । ସଙ୍ଗେ ସଙ୍ଗେ ଏକ ଦକ୍ଷ ପ୍ରଧାନଶିକ୍ଷୟିତ୍ରୀ ଭଳି ଗାୟତ୍ରୀ ଦେବୀ ମଦନକୁ ଆଦେଶ ଦେଇ କହିଲେ, ''ମଦନ, ତୁ ବୋଧହୁଏ ବାବୁଙ୍କୁ ଚିହ୍ନିନୁ । ସେ ହେଉଛନ୍ତି ପାରଳାଖେମୁଣ୍ଡି ତହସିଲ୍‌ର ତହସିଲଦାର । ରେଣ୍ଟାଲ କଲୋନୀ ନିକଟସ୍ଥ ଭି.ଆଇ.ପି. କଲୋନୀରେ ରୁହନ୍ତି । ମୁଁ ଏଠାରେ ଅପେକ୍ଷା କଲି । ଶୀଘ୍ର ବାବୁଙ୍କୁ ଛାଡି ଦେଇ ଆସ । ସେଠାରୁ ଫେରିଲେ ଆମେ ଭୀମଟାଙ୍ଗୀ ଯିବା ।''

ମଦନ କହିଲା, ''ମା, ରେଣ୍ଟାଲ କଲୋନୀକୁ ଯାଇ ଫେରି ଆସିବାକୁ ଅଧଘଣ୍ଟାରୁ ଅଧିକ ଲାଗିବ । ଆପଣ ଏଠାରେ ଏମିତି ଠିଆ ହେବା କଥା ମାମୁ ଜାଣିଲେ ମୋତେ ଆଉ ରଖାଇ ଦେବେନି ।''

''ନା'' ମୁଁ ଏମିତି ଠିଆହୋଇ ଅଛି । ମୋ କଥା ମାନ, ବାବୁଙ୍କୁ ଛାଡିଦେଇ ଆସ ।'' ଗାୟତ୍ରୀ ଦେବୀ କହିଲେ ।

ମା'ଙ୍କ କଥା ଶୁଣି ମଦନ ମନେ ମନେ ଭାବିଲା, ''ବୋଧହୁଏ ବାବୁଙ୍କ ସହିତ ମା' ପଛରେ ବସିବାକୁ ପସନ୍ଦ କରୁ ନାହାନ୍ତି । ତେଣୁ ଟିକିଏ ରହିଯାଇ କହିଲା, ''ମା, ବହୁତ ଥର ମାମୁଙ୍କ ଠାରୁ ଶୁଣିଛି ଆପଣ ଭଲ ଗାଡି ଚଳାନ୍ତି । ଥରେ ଆଖିରେ ଦେଖି ନାହିଁ । ଆପଣ ଗାଡି ଚଳାନ୍ତୁ ।'' ଏହା କହି ମଦନ ଗାଡିର ପଛରେ ବାବୁଙ୍କୁ ବସାଇ ନିଜେ ବସି ପଡିଲା ।

ନିହାତି ସରଳ ଅଥଚ ବିବେକବନ୍ତ ମଣିଷ ମଦନର ଅନୁରୋଧକୁ ଗାୟତ୍ରୀ ଦେବୀ ଆଡେଇ ଦେଇ ପାରିଲେ ନାହିଁ । ମଦନ ଠାରୁ ଗାଡିର ଚାବି ନେଇ ଷ୍ଟାର୍ଟ ଦେଲେ । ଚାହୁଁ ଚାହୁଁ ଅଳ୍ପ ସମୟ ମଧ୍ୟରେ ରେଣ୍ଟାଲ କଲୋନୀ ନିକଟସ୍ଥ ଭି.ଆଇ.ପି. ଏରିଆରେ ଅବସ୍ଥିତ ଏକ ତ୍ରିତଳ କୋଠାଘର ନିକଟରେ ଫିଆଟ ଗାଡିଟା ଅଟକି ଗଲା ।

ଭି.ଆଇ.ପି. କଲୋନୀରେ ଅବସ୍ଥିତ ସେହି ତ୍ରିତଳ ପ୍ରାସାଦଟି ଯେ ସେଦିନ ଅପ୍ରତ୍ୟାଶିତ ଭାବେ ଏମିତି ସଜ୍ଜିତ ହୋଇ ସତେ ଯେମିତି ଗାୟତ୍ରୀଦେବୀଙ୍କୁ ଅପେକ୍ଷା କରି ରହିଥିବ, ଏହା ଥିଲା ଗାୟତ୍ରୀ ଦେବୀଙ୍କ ଚିନ୍ତାର ବାହାରେ । ଭାବିଥିଲେ ବାହାରେ ବାହାରେ ଅନ୍ୟମାନଙ୍କ ଅଜଣାରେ ମହୀଧରବାବୁଙ୍କୁ ଓହ୍ଲାଇଦେଇ ସେ ଫେରି ଆସିଥାନ୍ତେ ଭୀମଟାଙ୍ଗୀ ଅଭିମୁଖେ ।

ମାତ୍ର ଗାଡିଟି ଯେମିତି ରହିଛି ଗାଡି ପାଖକୁ ଚାଲି ଆସିଛି ସନାତନ । ପୁଅ କୁନୁ । ସମତେ ନିର୍ବାକ ହୋଇ ଯାଇଛନ୍ତି ।

ଘର ଆଗରେ ଥିବା ବ୍ୟାନରରୁ ଯେ କୁନୁର ଷୋଳପାଲା ପାଇଁ ଏ ଆୟୋଜନ କଥା ଗାୟତ୍ରୀ ଦେବୀଙ୍କୁ ଆଉ ବୁଝିବାକୁ ବାକି ରହିଲା ନାହିଁ । ନିମନ୍ତ୍ରିତ ଅତିଥିମାନଙ୍କ ଅସ୍ୱାଭାବିକ ଭିଡ ଲାଗିଛି । ଦୂରରେ ବନ୍ଧୁବାନ୍ଧବମାନେ ବସି ରହିଛନ୍ତି ।

ଏସବୁ ଦୃଶ୍ୟ ଗାୟତ୍ରୀ ଦେବୀଙ୍କୁ ସ୍ୱପ୍ନ ପ୍ରାୟ ମନେ ହେଲା । ସେ କ'ଣ କରିବେ ଭାବି ପାରିଲେ ନାହିଁ । ଆଗରେ ମା'କୁ ଚାହିଁ ଠିଆ ହୋଇଛି କୁନୁ । ଦୀର୍ଘ ଆଠ ବର୍ଷଧରି

ମା'କୁ ପ୍ରତୀକ୍ଷା କରି ସତେଯେମିତି ନିର୍ବାକ ପାଲଟି ଯାଇଛି ! ତାର ତାରୁଣ୍ୟରେ ଯେମିତି ଅନେକ କ୍ଷତ ଲାଗିଛି ! ଜନନୀର ସ୍ନେହର ଅଭାବରେ ତାର ମୁଖମଣ୍ଡଳ ଯେମିତି କଳା ପଡିଯାଇଛି !!

ଗାୟତ୍ରୀ ଦେଖିଲେ ଘରର ଗେଟ୍‌ରେ ଖଞ୍ଜା ଯାଇଥିବା ମାର୍ବଲ ଖୁଣ୍ଟରେ ତାଙ୍କ ନାମ ସହିତ ମହୀଧର ବାବୁଙ୍କ ନାମ ସେମିତି ଚକ୍ ଚକ୍ ଦିଶୁଛି । ତାଙ୍କର ମାନ ଅଭିମାନର ସମସ୍ତ ସ୍ୱର ସତେ ଯେମିତି କ୍ଷୟପ୍ରାପ୍ତ ହୋଇ ଆସୁଛି । ସେ ଯେମିତି ସର୍ବଗ୍ରାସୀ କାଳର ଛାୟାରେ ନିଜର ଆତ୍ମ ପରିଚୟ ହଜାଇ ଦେଇଛନ୍ତି ।

''ମା' ବାବୁ ଓହ୍ଲେଇ ଗଲେଣି । ମାମୁ ତେଣେ ଅପେକ୍ଷା କରିଥିବେ । ଆପଣ ଗାଡି ଚଳେଇବେ ନା ମୁଁ ?''

'ତୁମେ' ଗାୟତ୍ରୀ ଦେବୀ ଉତ୍ତର ଦେଲେ ।

''ତେବେ ଆପଣ ଆସି ବସୁ ନାହାଁନ୍ତି କାହିଁକି । ମଦନ କହିଲା ।

ଗାୟତ୍ରୀ ଦେବୀ କହିଲେ, ''ମଦନ, ମୁଁ ବର୍ତ୍ତମାନ ଭୀମଟାଙ୍ଗୀ ଯିବି ନାହିଁ । ପ୍ରଭୁ ସତ୍ୟନାରାୟଣ ଯେ ମୋତେ ଏଠାରେ ଏପରି ପହଞ୍ଚାଇବେ ସେ କଥା ମୁଁ ସ୍ୱପ୍ନରେ ସୁଦ୍ଧା ଭାବି ନଥିଲି । ଏଘର ମୋର ଅତି ଆପଣାର । ଅତି ନିଜର ।

ମଦନ ନିର୍ବାକ୍ ହୋଇ ଚାହିଁରହିଲା ଗାୟତ୍ରୀ ଦେବୀଙ୍କ ମୁହଁକୁ ।

ଅତି ସରଳ ଓ ସ୍ୱଭାବ ସୁଲଭ ଭାଷାରେ ଗାୟତ୍ରୀ ଦେବୀ କହିଲେ, ''ମଦନ ତୁମେ ଆଉ ଡେରି କରନାହିଁ । ଡେରି ହେଲାଣି । ଘରେ ମାମୁଁ ଅପେକ୍ଷା କରିଥିବେ । ମାମୁଁଙ୍କୁ ଶୀଘ୍ର ଏଠାକୁ ନେଇ ଆସିବ । କହିବ, ''ମୁଁ କହିଛି ।'' ଆଉ ଅଧିକ କିଛି ପଚାରିଲେ କହିବ, ''କୁନୁ ବାବୁଙ୍କର ଷୋଳ ପାଳା ହେଉଛି ।'' ପାଳା ସରିଗଲେ ମୁଁ ମାମୁଙ୍କ ସହିତ ଚାଲିଯିବି ।''

ମା'ଙ୍କ ଠାରୁ ଆଦେଶ ପାଇ ମଦନ ମନ ଆନନ୍ଦରେ ଗାଡିର ହର୍ଣ୍ଣ ବଜାଇ ସେଠାରୁ ଚାଲିଗଲା ।

କାଳ ବିଳମ୍ବ ନକରି ଗାୟତ୍ରୀ ଦେବୀ ଆଗନ୍ତୁକ ମାନଙ୍କ ଅଭ୍ୟର୍ଥନାରେ ଲାଗି ପଡିଲେ । ଆଠବର୍ଷ ତଳର ଅକୁହା ଇତିହାସର ପୃଷ୍ଠା ମଳିନ ପଡି ଆସିଲା । ପ୍ରଭୁ ସତ୍ୟନାରାୟଣଙ୍କ ପ୍ରତି ତାଙ୍କ ମନର ଗଭୀରତମ ପ୍ରଦେଶରୁ କୃତଜ୍ଞତା ଝରି ଆସିଲା ।

ଖୋଳତାଳ ମୃଦଙ୍ଗର ଶବ୍ଦରେ ଭି.ଆଇ.ପି. କଲୋନୀର ସେହି ସ୍ଥାନଟି ଶବ୍ଦାୟିତ ହେଲା । ଯେମିତି ଆଠବର୍ଷତଳର ନିର୍ଜ୍ଜୀବ ଘରଟି ଜୀବନ୍ୟାସ ପାଇଛି ।

ଘରର ଅଭିଭାବକ ତଥା ପୁରୁଣା ଚାକର ସନାତନର ଆନନ୍ଦ କହିଲେ ନସରେ । ମା'ଙ୍କ ସହିତ କେତେ ହସଖୁସି । ମାମୁଁ ଆସି ପହଞ୍ଚିବା କ୍ଷଣି ସନାତନର ଚିତ୍କାର, ''ମାମୁଁ ଆସିଗଲେ, ମାମୁଁ ଆସିଗଲେ, ମାମୁଁଙ୍କୁ ବସାଅ, ବସାଅ'' ଆଦି ଚିତ୍କାର ଶୁଣିଲେ ଯେକେହି ସନାତନର ପୁରୁଖାପଣିଆ ଜାଣିପାରିବ ।

ସମସ୍ତଙ୍କ ଖିଆପିଆ ସରିଯାଇଛି । ସତ୍ୟନାରାୟଣ ପାଲା ସରିବାକୁ ଅଳ୍ପ ସମୟବାକୀ ଅଛି । ହଠାତ୍ ମହୀଧର ବାବୁଙ୍କର ସତେଜ ଓ ଆନନ୍ଦିତ ମୁହଁଟି ମଳିନ ପଡିବାକୁ ଲାଗିଲା । ଥକାମରା ହୋଇ ପାଲାସ୍ଥଳୀର ଗୋଟିଏ କୋଣରେ ଥିବା ଚୌକୀ ଉପରେ ବସି ପଡିଲେ । ମନେ ମନେ ଭାବିଲେ, ଯଦି ଗାୟତ୍ରୀ ପୂର୍ବ ଜିଦ୍ ରଖି ମାମୁଁଙ୍କ ସହିତ ପଳାଇଯଆନ୍ତି, ତେବେ ସେ କେଉଁ ମୁହଁନେଇ ପୁଅ କୁନୁ ଓ ସନାତନ ପାଖରେ ରହିବେ ।''

ମହୀଧର ବାବୁଙ୍କ ଭାବନାରେ ପୂର୍ଣ୍ଣଚ୍ଛେଦ ଟାଣି ସନାତନ କହିଲା, ''ବାବୁ କ'ଣ ଏମିତି ଭାବୁଛ । ମାମୁଁ ବାହାରିଲେଣି । ମା'ଙ୍କ ହସ ହସ ମୁହଁ ମଳିନ ପଡି ଆସିଛି । ମୋର ମନେ ହେଉଛି ସେ ଯେମିତି ବୋଧହୁଏ ମାମୁଁଙ୍କ ସହିତ ପଳାଇ ଯିବେ । ଏପରି ପରିସ୍ଥିତି ନ ଦେଖିବା ପାଇଁ କୁନୁ ବାବୁ ଯାଇଁ ଆର ଘରେ ଶୋଇ ପଡିଲେଣି ।''

'ପାଲା ବାଲା କ'ଣ କରୁଛନ୍ତି ? ମହୀଧର ବାବୁ ପଚାରିଲେ ।

''ସେମାନେ ପାଲାସାରି ସେମାନଙ୍କର ପୋଷାକପତ୍ର ଖୋଲୁଛନ୍ତି । ସେମାନଙ୍କୁ ଚା'କପେ କପେ ଦେଇ ଆସିଛି ।''

''ବେଶ୍ ଭଲ କରିଛୁ । କୁନୁ ଶୋଇଯାଇଛି ବେଶ୍ ଭଲ ହୋଇଛି । ଚାଲ, ମାମୁଁଙ୍କୁ ବଳେଇ ଦେବା ।'' ମହୀଧର ବାବୁ କହିଲେ ।

ମହୀଧର ବାବୁଙ୍କୁ ଦେଖି ମାମୁଁ ଆରମ୍ଭ କଲେ, ''ମହୀଧର, ଆଜି ମୁଁ ବହୁତ ଖୁସି । ପ୍ରଭୁ ସତ୍ୟନାରାୟଣଙ୍କ କୃପାରୁ ଷୋଳପାଲା ଭଲରେ ଭଲରେ ସରିଲା । ପ୍ରତିବର୍ଷ ଏମିତି ସତ୍ୟନାରାୟଣଙ୍କ ପୂଜା କର । କେବଳ ନିଜର ମଙ୍ଗଳ ପାଇଁ ନୁହେଁ । ସାରା ବିଶ୍ୱର ମଙ୍ଗଳ ପାଇଁ ।''

ଗାନ୍ଧିବାଦୀ ମାମୁଁଙ୍କ ମୁହଁରୁ ଏପରି କଥା ଶୁଣିବା ନୂଆ ନହେଲେବି ମହୀଧର ବାବୁଙ୍କୁ ନୂଆ ନୂଆ ଲାଗିଲା । ସେ ହସି ହସି କହିଲେ, ''ମାମୁଁ ପ୍ରତିବର୍ଷ ପ୍ରଭୁ ସତ୍ୟନାରାୟଣଙ୍କ ପୂଜା ହେବ । ଆପଣଙ୍କ ପାଦ ଆମ ଘରେ ଯେମିତି ପଡୁଥିବ ।''

ମାମୁଁ କହିଲେ, ''ଆରେ, ସେ କଥା କହିବାକୁ ଅଛି ? ମୁଁ ନିଶ୍ଚୟ ଆସିବି । ଏହା କହି ମାମୁ ଗାଡି ପଛରେ ବସି ପଡିଲେ । ଗାଡି ଷ୍ଟାର୍ଟ କରିବାକୁ ମଦନକୁ କହିଲେ ।

ଗାୟତ୍ରୀ ବସିବା ପାଇଁ ଗାଡିର ପଛ ଦ୍ୱାରକୁ ହାତରେ ଟାଣି ଆଣିଲେ । ମାମୁ କହିଲେ, ‘‘ନା, ମା’, ତୋ ଘରର ଦ୍ୱାର ଏତେ ବଡଯେ ମୋ ଗାଡିର ଛୋଟଦ୍ୱାରକୁ ଆସି ତୁ ସବୁଦିନ ପାଇଁ ମୋ ପାଖରେ ରହିପାରିବୁ ନାହିଁ । ଘରେ ତୋର ଦେବ ପ୍ରତିମ ସ୍ୱାମୀ, କୁଳ ଚନ୍ଦ୍ରମା କୁନୁ, ପିତୃତୁଲ୍ୟ ସନାତନ ଏମାନଙ୍କୁ ଛାଡି ମୁଁ କ’ଣ ତୋତେ ମୋ ଘରକୁ ନେଇଯାଇ ପାରିବି ?’’

ମାମୁଁଙ୍କ କଥାଶୁଣି ମହୀଧରଙ୍କ ଆଖିରୁ ଲୁହ ଦୁଇବୁନ୍ଦା ଖସି ଆସିଲା ।

ଗାୟତ୍ରୀ ଦେବୀ କହିଲେ, ‘‘ମାମୁଁ , ଆପଣ ଯାହା କହିଲେ ସବୁ ସତ । ମାତ୍ର ଆପଣଙ୍କ ଦେହ ଭୀଷଣ ଖରାପ । ଖାଲି ବାହାରକୁ ଆପଣ ହସ ହସ ଦେଖା ଯାଉଛନ୍ତି । ମୁଁ ଆଜି ସାଥୀରେ ଯାଉଛି- କାଲି ଫେରି ଆସିବି ।’’

ମାମୁଁ କହିଲେ, ‘‘ମା’ ଆଜି ମୋ ସହିତ ଯିବା ଦରକାର ନାହିଁ । କାଲି ମୁଁ ଗାଡି ପଠାଇବି ତୁ, ମହୀଧର ଓ କୁନୁ ମୋ ଘରକୁ ଯିବ । ସାଥୀରେ ସନାତନକୁ ନେବ । କାଲି ରାତିରେ ଏକାଠି ଖିଆପିଆ କରିବା ।’’

ଗାୟତ୍ରୀ ଦେବୀ କହିଲେ, ‘‘ମୁଁ ତୁମ ଦେହ କଥା କହୁଚି ମାମୁଁ ।’’

ମାମୁ ହସି ହସି କହିଲେ, ‘‘ମୋ ଦେହ ଭଲ ହୋଇ ଯାଇଛି । ସେଥିପାଇଁ ଚିନ୍ତା କରନା ମା । ମୋ ଦେହରେ ଥିବା ଅଜର ଅମର ଆତ୍ମା ମୋତେ ତୋ ପୁଅର ଷୋଳ ପାଲାରେ ପୁଲକିତ କରିଛି ।’’

ମଦନ ଗାଡି ଷ୍ଟାର୍ଟ କଲା ।

ଉଭୟେ ସ୍ୱାମୀ ସ୍ତ୍ରୀ ମାମୁଁଙ୍କୁ ନମସ୍କାର ଜଣାଇଲେ ।

ନୂତନ ସୂର୍ଯ୍ୟ ଆକାଶରେ ଦେଖାଦେଲେ ମନପ୍ରାଣ ଆନନ୍ଦିତ ହୁଏ । ଜୀବନ ଚଳଚଞ୍ଚଳ ହୋଇଉଠେ । ସେହିପରି ପୂଜା ପରଦିନ ଭି.ଆଇ.ପି. କଲୋନୀର ସେହି ଧବଳରଙ୍ଗର ଘରଟି ଚଳଚଞ୍ଚଳ ହୋଇ ଉଠିଲା । ସତେ ଯେମିତି ସମସ୍ତଙ୍କ ମନ ଓ ପ୍ରାଣରେ ନୂତନ ସୂର୍ଯ୍ୟ ଅଭ୍ୟୁଦୟ ଘଟିଛି ।

ସକାଳୁ ସକାଳୁ ଗାୟତ୍ରୀ ଦେବୀ ଉଠି ମହୀଧର ବାବୁଙ୍କ ପାଇଁ ଚା କପେ ଧରି ଆସିଲେ । କହିଲେ, ‘‘ଆପଣ, ଏମିତି ଶୋଇ ରହିଛନ୍ତି କ’ଣ । ଦିନ ନଅଟା ହେଲାଣି । ଚା କପେ ନିଜେ କରିଛି । ପିଇ ଦିଅନ୍ତୁ ।’’

ମହୀଧର ବାବୁ କହିଲେ, ‘‘ଗାୟତ୍ରୀ, ଆପଣ ଶବ୍ଦ ନୁହେଁ, ତୁମେ କୁହ ।’’

ଗାୟତ୍ରୀ ଦେବୀ ହସି ହସି କହିଲେ, ‘‘ସେଇଥି ପାଇଁତ ଟ୍ରେନ୍‌ରେ ବାଟଯାକ ‘ଆପଣ’ ‘ଆପଣ’ କହି ଏକ ବ୍ୟବଧାନ ସୃଷ୍ଟି କରୁଥିଲ !’’

"ଆଉ ତୁମେ ତ 'ଆପଣ'ରୁ 'ତୁମେ' ପର୍ଯ୍ୟନ୍ତ ଆସି ନଥିଲ ।'' ମହୀଧର ବାବୁ କହିଲେ ।

'ଛାଡ ସେକଥା । ମୁଁ କ'ଣ କହୁଥିଲି କି ପାରଳାଖେମୁଣ୍ଡିରେ ଦିନେ ନମିତା ଆସି ମୋତେ ଦେଖା କରିଥିଲା ।''

'କ'ଣ ମୋର ପ୍ରେମିକା ଭାବରେ ।'' ମହୀଧର ବାବୁ କହିଲେ ।

"ତୁମେ ସେମିତି କ'ଣ କହୁଛ ?'' ଗାୟତ୍ରୀ ଦେବୀ କହିଲେ । "ମୁଁ ଜାଣେ ତୁମର କେହି ପ୍ରେମିକା କେବେ ନଥିଲେ କି ନମିତା ନଥିଲା । ଅବଶ୍ୟ ସେତକ ଜାଣିବାକୁ ମୋର ଯାହା ଡେରିହେଲା । ସେଥିପାଇଁ ଆଠ ବର୍ଷର ଯନ୍ତ୍ରଣା । ଯନ୍ତ୍ରଣା ସୃଷ୍ଟିକାରୀ ଭାବେ ମୋତେ ହିଁ ଯନ୍ତ୍ରଣା ଭୋଗିବାକୁ ପଡିଲା ।''

"ଆଉ ମୁଁ କ'ଣ ସେ ଯନ୍ତ୍ରଣା ଭୋଗିନି !'' ମହୀଧର ବାବୁ କହିଲେ ।

ଗାୟତ୍ରୀ ଦେବୀ ହସି ହସି କହିଲେ, " ସେପରି କୁହ ନାହିଁ । ସବୁ ଦୋଷ ମୋ ନିଜର । ମୁଁ ଜାଣି ନଥିଲି ଯେ ମଣିଷ ଯାହା ଆଖିରେ ଦେଖେ, ମନରେ ଭାବେ ତାହା ଅସତ୍ୟ ବୋଲି ।''

"ତେବେ ସତ କ'ଣ ?'' ମହୀଧର ବାବୁ କହିଲେ ।

"ନମିତାକୁ ସାହାଯ୍ୟ କରିବା ସତ ।'' ଗାୟତ୍ରୀ ଦେବୀ କହିଲେ । ପୁଣି ଆରମ୍ଭ କଲେ, "ନମିତା କହୁଥିଲା ତୁମେ ତାକୁ ସେଦିନ ସେତିକି ସାହାଯ୍ୟ କରିନଥିଲେ ସେ ତାର ସ୍ୱାମୀଙ୍କ ଡେଥ୍ ସାର୍ଟିଫିକେଟ୍ ପାଇ ପାରି ନଥାନ୍ତା । ପୁଣି ହାତ ପାହାନ୍ତାରେ ଥିବା ଚାକିରୀଟି ତା'ର ସବୁଦିନ ପାଇଁ ଚାଲିଯାଇଥାନ୍ତା ।''

"ମୁଁ ସେ କଥା ଜାଣେ ଗାୟତ୍ରୀ ।'' ମହୀଧର ବାବୁଙ୍କ କଣ୍ଠ ବାଷ୍ପରୁଦ୍ଧ ହୋଇ ଆସିଲା । ପୁଣି ଆରମ୍ଭ କଲେ, "ଗାୟତ୍ରୀ , ଦକ୍ଷପ୍ରଶାସକ ହିସାବରେ ସ୍ୱାଧୀନ ଭାରତବର୍ଷର ଅମଲାତାନ୍ତ୍ରିକ ଶାସନ ପଦ୍ଧତିରେ କାମ କରିବା ଯେ କେତେକଷ୍ଟ ତାହା କେବଳ ସେହି ପରିସ୍ଥିତିରେ କାମ କରୁଥିବା ଲୋକ ଜାଣନ୍ତି । ଗଦା ଗଦା ଫାଇଲ୍ ମଧ୍ୟରେ ନାଗରିକର ନିମ୍ନତମ ଦାବୀ ପ୍ରତି ମଧ୍ୟ କେହି କର୍ଣ୍ଣପାତ କରୁନାହାଁନ୍ତି ।''

"ଆଉ ତୁମେ ? ତୁମେତ ସେତିକି କରୁଛ, ତାହା କ'ଣ ମୋର ଓ ମୋ ପରିବାରର ସୌଭାଗ୍ୟ ନୁହେଁ ।'' ଗାୟତ୍ରୀ ଦେବୀ କହିଲେ ।

ମହୀଧରବାବୁଙ୍କ ମୁଖମଣ୍ଡଳ ଗମ୍ଭୀର ହୋଇ ଆସିଲା । ସେ କହିଲେ " ଗାୟତ୍ରୀ, ମୁଁ ମୋ ଦାୟିତ୍ୱ କେତେଦୂର ନିରପେକ୍ଷ ଓ ଜନସ୍ୱାର୍ଥ ଅଭିପ୍ରେତ ଭାବେ କରି ପାରୁଛି ତାହା ଈଶ୍ୱରହିଁ ଜାଣନ୍ତି । ମାତ୍ର ଯେତେବେଳେ ମୁଁ ମୋର ଚେୟାର ଉପରେ ବସି ପଡେ, ସେତେବେଳେ ମୋତେ ସ୍ୱାଧୀନ ଭାରତର ଏକ ନିରପେକ୍ଷ

ପ୍ରଶାସନ ଦେଖାଯାଏ । ମୋ ଆଖି ସାମ୍ନାରେ ବିଭିନ୍ନ କାମ ପାଇଁ ଆସୁଥିବା ଲୋକଙ୍କର ଆପତ୍ତି ଅଭିଯୋଗ ସାକାର ଓ ଏକାକାର ହୋଇ ଉଠେ । ସେଠି କୌଣସି ପ୍ରେମିକାର ମୁହଁ ଦେଖାଯାଏ ନାହିଁ, କିମ୍ବା କୌଣସି ରାଜନୈତିକ ଲୋକଙ୍କର ନାଲିଆଖିର ଭୟ ମୋତେ ଭୟଭୀତ କରେ ନାହିଁ ।''

ମହୀଧର ବାବୁଙ୍କ କଥାଶୁଣି ଗାୟତ୍ରୀ ଦେବୀ ନିଜକୁ ଗର୍ବୀତ ମନେ କରୁଥିଲେ । ତଥାପି ତାଙ୍କ ମନରେ ତାଙ୍କ ପ୍ରତି ଭରି ରହିଥିବା ଆଉ ଏକ ଅଭିମାନର ସୂତାଖିଅ ଆସି ଦେଖାଦେଲା । ସେ ପଚାରିଲେ, ''ଛାଡ, ଅଫିସ କଥା ଆଉ ପରେ କଥାବାର୍ତ୍ତା ହେବା ।' କିନ୍ତୁ ମୋ ମନରେ ତୁମପ୍ରତି ଟିକିଏ ଅଭିମାନ ରହିଲା ।''

''କ'ଣ ସେହି ଅଭିମାନ ?'' ମହୀଧର ବାବୁ ପଚାରିଲେ ।

ଗାୟତ୍ରୀ ଦେବୀ କହିଲେ, ''ତୁମେ ମୋ ପୁଅ କୁନୁକୁ ତ ମୋତେ ଡାକି ଆଣିବାକୁ ପଠାଇ ପାରିଥାନ୍ତ ?''

ମହୀଧର ବାବୁ ହସି ହସି କହିଲେ, ''ଗାୟତ୍ରୀ, କୁନୁକୁ ମୁଁ ବାରମ୍ବାର କହିଚି । କିନ୍ତୁ ତୁମ ସହିତ ଟିକିଏ ପାଟିତୁଣ୍ଡ କଲେ ତୁମ ପକ୍ଷ ନେଉଥିବା ତୁମର ସେ ପୁଅ ଯେ ଢ଼େର ବଡ ହୋଇଯାଇଛି ଏକଥା ତୁମେ ଭୁଲିଯାଉଛ । ଥରେ ତାକୁ କହିଥିଲି । ସେ କ'ଣ କହିଲା ଜାଣ ?''

''କ'ଣ କହିଲା ?'', ଗାୟତ୍ରୀ ଦେବୀ ପଚାରିଲେ । କହିଲା ''ବାପା ତୁମ ଘର ସଂସାର ତୁମର । ସେଥିରେ ମୁଁ ବା କ'ଣ କରିବି ?''

''ସତରେ ! କୁନୁ ଏପରି କହିଲା !!'', ଆଶ୍ଚର୍ଯ୍ୟ ହୋଇ ଗାୟତ୍ରୀ ଦେବୀ ପଚାରିଲେ ।

ମହୀଧର ବାବୁ କହିଲେ ଖାଲି ସେତିକି ନୁହେଁ । ମୋତେ ଲକ୍ଷ୍ୟ କରି କହିଲା, ''ବାପା, ମୁଁ ତୁମକୁ ଯେତିକି ଭଲପାଏ, ମାଆକୁ ମଧ୍ୟ ସେତିକି ଭଲ ପାଏ । ତୁମେ ତୁମ କଥା ବୁଝୁଛ । ମାଆ ତା' କଥା ବୁଝୁଛି । ସେତିକିରେ ମୁଁ ଖୁସି । ମୋତେ ଦୟାକରି ତୁମ ଦୁଇଜଣଙ୍କ ଭଲ ମନ୍ଦରେ ପୂରାନା ।''

''ଖୁବ୍ ଭଲ କହିଛି ।'' ଗାୟତ୍ରୀ ଦେବୀ କହିଲେ ।

ମହୀଧରବାବୁ କହିଲେ, ''ହଁ, ସେତିକି ଭଲମନ୍ଦ ଶକ୍ତି ଆମେ ଦୁହେଁ ହରେଇ ବସିଥିଲେ । ଯାହାଫଳରେ ଅନ୍ଧକୁହେଳିରେ ଆମକୁ ଆଠବର୍ଷ ଘୂରି ବୁଲିବାକୁ ପଡିଥିଲା ।

ମହୀଧର ବାବୁଙ୍କ କଥାଶୁଣି ଗାୟତ୍ରୀଦେବୀ ଏକ ଦୀର୍ଘ ନିଃଶ୍ୱାସ ଛାଡିଲେ ।



# ଅଳସ ଅପରାହ୍ନ

**ସ**କାଳୁ ସକାଳୁ ବୋଉ ଆସି କହିଲା ''କିରେ ! ତୁ ଏମିତି କେତେ ପାଠ ପଢ଼ିବୁ ଯେ ମୁଁ ତୋତେ ଅପେକ୍ଷା କରି ରହିବି । ଅପେକ୍ଷା କରିବାର ପୁଣି ଗୋଟିଏ ସୀମା ଅଛି । ପାଠ ପଢ଼ାସରିଲା, ଚାକିରୀ ଖଣ୍ଡିଏ ତ ମିଳିଗଲା । ହେଉ ପଛକେ ଛୋଟ ଚାକିରୀ, ଦୁଇ ପଇସାତ ରୋଜଗାର କରିବୁ । ତୋ ପେଟକୁ କ'ଣ ତୁ ପୋଷି ପାରିବୁ ନାହିଁ ।''

ବୋଉର ଏଇସବୁ ଅସଂଲଗ୍ନ କଥାଗୁଡ଼ିକର କୌଣସି ଅର୍ଥ ମୁଁ ବୁଝି ପାରିଲି ନାହିଁ । କହିଲି ''ବୋଉ, ତୁ ଏମିତି କ'ଣ କହୁଛୁ ? ତୁ ତ ମୋର ଅଛୁ, ଏଦେହ ଏ ପେଟ ସବୁ ତୋର ଦାନ । ମୁଁ କେବେ ମୋର ପେଟ ପୋଷା କଥା ଚିନ୍ତା କରେନି । ତୁ ଯେମିତି ମୋର ମାଆ, ଏଇ ଧାନ କ୍ଷେତ, ସବୁଜ ବନାନୀ ଭରା ଧରିତ୍ରୀ ମଧ ମୋର ମା । ମୋର ଦୁଇଟି ମାଆ ଥାଉ ଥାଉ ମୋ ଚାକିରୀ ଯେ ମୋର ପେଟ ପୋଷିବ ସେ କଥା ମୁଁବା କାହିଁକି ମୋର ଏ ଛୋଟିଆ ମନକୁ ଆଣିବି ?''

ମୋ କଥା ଶୁଣି ବୋଉ ମନେ ମନେ ବିରକ୍ତ ହେଲାକି ନାହିଁ, ସେ କଥା ମୁଁ କହିପାରିବି ନାହିଁ । ମାତ୍ର ହସି ହସି କହିଲା, ''ତୋର ସେ କବି ଓ ଲେଖକ କଥାଗୁଡ଼ାକ ମୋତେ ଆଉ ବେଶୀ କହନି । ତୋତେ ଏଇ ହାତରେ ପାଳି ଏଡେରୁ କେଡେଟିଏ କଲିଣି । ହେଲେ ମୁଁ ଆଉ ଅପେକ୍ଷା କରି ପାରିବି ନାହିଁ । ମୋର ଯାହା କରିବାର କଥା ମୁଁ କରିବି ।'' ଏତକ କହି ବୋଉ ସେଠାରୁ ଚାଲିଗଲା । ମୁଁ ଆଉ ବୋଉର କୌଣସି କଥାରେ ଗୁରୁତ୍ୱ ଦେଲି ନାହିଁ ।

ପରଦିନ ସକାଳୁ ସକାଳୁ ବାହାରିଲି ସମ୍ବଲପୁର । ସମ୍ବଲପୁର ଠାରେ ମୋର ପ୍ରଥମ ଅଧ୍ୟାପକ ଜୀବନ ଆରମ୍ଭ । ଯେତେବେଳେ ସମ୍ବଲପୁର ଅଭିମୁଖେ ବାହାରିଲି ବୋଉ ଆସି କହିଲା ''କିରେ ! ତୁ ଏବେ ସେହି ବୁଢ଼ାରଜା ପାଖ କ୍ୱାର୍ଟସରେ ରହୁଚୁ ତ ?''

ହଁ, ମୁଁ କହିଲି ।

'ହଉ, ଭଲରେ ଭଲରେ ଯାଆ । ବୁଢ଼ାରଜା ଓ ମାଆ ସମଲେଇ ତୋର ସବୁବେଳେ ସହାୟ ହୁଅନ୍ତୁ ।''

ବୋଉର ଶୁଭେଚ୍ଛା ବାର୍ତ୍ତା ଶୁଣି ମୁଁ ଭାରି ଖୁସି ହେଲି । ହସି ହସି କହିଲି, ''ବୋଉ, ତୋପରି ମୋର ଚଳନ୍ତି ଠାକୁରାଣୀ ସଦୃଶ ମା' ଓ ଦେବ ପ୍ରତିମ ବାପା ଥାଉ ଥାଉ ମୁଁ କାହିଁକି ବୁଢ଼ାରଜା ଓ ମା'ସମଲେଇଙ୍କ ସାହା ଲୋଡିବି ?''

ମୋ କଥା ଶୁଣି ବୋଉର ହସିଲା ହସିଲା ମୁହଁ ଗମ୍ଭୀର ହୋଇ ଉଠିଲା । ସେ ଆଖି ତରାଟି କହିଲା, ''ପୁଅ, ତୁ ସେମିତି କୁହନା, ଆମେ ସିନା ଜନ୍ମଦାତା, ମାତ୍ର ସେମାନେ ତ ସମସ୍ତଙ୍କର ଲାଳନ ପାଳନ ଓ ରକ୍ଷାକର୍ତ୍ତା ।''

ବୋଉର କଥା ଶୁଣି ମୁଁ କହିଲି, ''ବୋଉ ତୁ ଯାହା କହୁଚୁ ସବୁ ଠିକ୍ । ଭାବୁଚୁକି ମୁଁ ତୋର ଦେବଦେବୀଙ୍କୁ ନିନ୍ଦା କରୁଚି । ମୁଁ କେବେ ତୋର ଦେବଦେବୀଙ୍କୁ ନିନ୍ଦା କରୁନି । ମାତ୍ର ମୋର ମାଆକୁ ଟିକିଏ ରଗାଇ ତା'ର ରାଗିଲା ମୁହଁରେ ନୂତନ ସୂର୍ଯ୍ୟର ଅଭ୍ୟୁଦୟ ଦେଖୁଚି ।''

ବୋଉ ମୋ କଥା ଶୁଣି ଭୀଷଣ ରାଗିଗଲା । କହିଲା, ''ଦୁଷ୍ଟ ! ଯା' ଯା, ଗାଡି ବେଳ ଡେରି ହୋଇଯିବ । ସାହିତ୍ୟସଭାରେ ଯାଇ ସାହିତ୍ୟ ଚର୍ଚ୍ଚା କରିବୁ । ମାତ୍ର ବୁଢ଼ୀମାଆ ପାଖରେ ନୁହେଁ ।''

ମୁଁ କହିଲି, ''ହଁ ବୋଉ, ଏଣିକି ମୁଁ ସାହିତ୍ୟ ଚର୍ଚ୍ଚା ସାହିତ୍ୟ ସଭାରେ କରିବି । ମାତ୍ର ତୋ ପାଦଧୂଳିଟିକେ ମୋତେ ଦେ, ମୁଁ ମଥାରେ ଲଗାଏ । ସେହି ପାଦଧୂଳି ମୋ ଲାଗି ସବୁଦିନ, ସବୁ ଯୁଗ ପାଇଁ ସାହିତ୍ୟ ହେଉ ।'' ଏହା କହି ମୁଁ ବୋଉର ପାଦଧୂଳି ଆଣି ମୋ ମଥାରେ ଲଗାଇଲି ଓ ସମ୍ବଲପୁର ଅଭିମୁଖେ ବାହାରି ଆସିଲି । ସେଦିନର ତିଥି ଓ ବାର ମୋର ମନେ ନାହିଁ । ଫେବୃୟାରୀ ମାସର ହୁଏତ କେଉଁ ଏକ ଅଳସ ଅପରାହ୍ନ । କ୍ୱାଟର୍ସର ଛାତ ଉପରେ ଆର୍ମ ଚେୟାରଟା ପକାଇ ବସି ବସି ଅନେକ କଥା ଭାବୁଥାଏ ।

ସେହି ଭାବନା ମଧ୍ୟରେ ପିଏଚ.ଡି କାର୍ଯ୍ୟ ପାଇଁ ମୋର ଆଗାମୀ ଯୋଜନା, ପିଏଚ୍.ଡି. କାର୍ଯ୍ୟ ପରେ ଫରେନ ଯିବାର କାର୍ଯ୍ୟକ୍ରମ ଆଦି ଅନେକ ଅନେକ କଳ୍ପନା ଗୋଟିଏ ପରେ ଗୋଟିଏ ଆସି ମୋ ମନକୁ ଆନ୍ଦୋଳିତ କରୁଥାଏ । ପୁଣି ମନ ଆଗରେ ସତେ ଯେମିତି ନାଚି ଆସୁଥାଏ ଏକ ଅନୁପମ ଦୃଶ୍ୟ । ନବବଧୂର ଘରକୁ ଆଗମନ ।

ସେହି ଭାବନା ମଧ୍ୟରେ ହଠାତ୍ ମୁଁ ଚିତ୍କାର କରି ଉଠିଲି, ''ନା, ମୋର ପିଏଚ.ଡି ଦରକାର, ଫରେନ୍ ଏଜୁକେସନ୍ ଦରକାର, ନବବଧୂ ତୁମେ ଏତେ ଶୀଘ୍ର ଆସନା । ଧୀର ସୁଲଳିତ ତୃତୀୟା ଜ୍ୟୋତ୍ସ୍ନାସନା ତୁମେ ଦିନେ ନା ଦିନେ ମୋ ଘରକୁ ଆସିବ । ଏକଥା ମୁଁ ଜାଣେ । ସେଇଥିପାଇଁ ଦୀର୍ଘ ଦିନର ବ୍ରହ୍ମଚର୍ଯ୍ୟ ଓ ତାପସ ବ୍ରତକୁ ମୋ ଜୀବନର ପଥ ଓ ପାଥେୟ କରି ମୁଁ ଶିକ୍ଷାକୁହିଁ ମୋ ଜୀବନର ସର୍ବୋତ୍ତମ ସାଧନା ରୂପେ ଗ୍ରହଣ କରିଛି । ତେଣୁ ନବବଧୂ, କିଛିଦିନ ତୁମେ ମୋର କଳ୍ପନାରେ ସେମିତି ସେମିତି ଶୁପ୍ତ ହୋଇ ରୁହ ।''

ଏଇ ସମୟରେ ଆମ ମେସ୍‌ର ବାଳକ ମଦନ ଆସି ମୋ ହାତକୁ ଚିଠିଟିଏ ବଢ଼ାଇ ଦେଇକହିଲା ''ସାର୍ କ'ଣ ନିଦ ଲାଗିଯାଇଥିଲା କି ? ଆପଣ କ'ଣ କିଛି ସ୍ୱପ୍ନ ଦେଖୁଥିଲେ କି ?''

ମୁଁ ହସି ହସି କହିଲି, ''ମଦନ, ଆଖିରେ ନିଦ ନଥିଲା କି ସ୍ୱପ୍ନ ବି ନଥିଲା । ଯାହା ଦେଖୁଥିଲି ଖାଲି କଳ୍ପନା । ହଉ ଯା, ଚିଠିର ଅକ୍ଷର ମୋର ବୋଉର । ବୋଉର ଚିଠି ପଢ଼ିବା ସମୟରେ ତୁତ ଜାଣୁ ଘରର କେତେ ସମସ୍ୟା । ସମସ୍ୟା କଥା ଶୁଣିଲେ ମୋ ମୁଣ୍ଡ ଗରମ । ତେଣୁ ମୋ ଚିଠି ପଢ଼ା ମଧ୍ୟରେ ଅତିକମ୍‌ରେ ଚା'କପଟିଏ ଦରକାର ହେବ । ସେତିକି ଆଣି ଦେ । ଚା ତିଆରି କଲାବେଳେ ଚା'ପତି ଭାଗ ଟିକେ ଅଧିକ ଦେବୁ ।''

ମଦନ ଚାଲିଗଲା ।

ବୋଉର ଚିଠି ଖୋଲିଲି । ଭାବିଲି ମୋ ପାଠପଢ଼ା ସମୟର କରଜ ଟଙ୍କା ଶୁଝାହେବା କଥା ଥିବ କିମ୍ବା ସାନ ଭଉଣୀ ବିବାହ ପ୍ରସଙ୍ଗ ଥିବ । କିନ୍ତୁ ଚିଠିଟି ପଢ଼ିବା ସମୟରେ ବୋଉ ପ୍ରତି ମୋ ମନରେ ଭୀଷଣ ରାଗ, ଅଭିମାନ ଓ ଦୁଃଖ ଆସିଲା । ଚିଠିରେ ଲେଖିଥିଲା, ''ସ୍ନେହର ଶୁଭ, ଜାଣିବୁ ଆମେ ଆସନ୍ତା ମାର୍ଚ୍ଚ ତିନି ତାରିଖରେ ତୋର ବିଭାଘର ସ୍ଥିର କରି ଦେଇଛୁ । ଆଉ ଦିନ ପାଞ୍ଚ, ଛଅଟା ରହିଲା । ଜାଇ ରଗଡା ସାରି ଦେଇଛୁ । ମୋ ଚିଠି ପାଇ ମନରେ ରାଗ କରିବୁନି । ବୁଢ଼ୀ ହେଲିଣି । ଆଉ କେତେଦିନବା ଅପେକ୍ଷା କରିଥାଆନ୍ତି ? ତୁ ତ ଜାଣୁ ବାପା ତୋର କୌଣସି କଥାରେ ମୁଣ୍ଡ ପୂରାନ୍ତି ନାହିଁ । ତେଣୁ ମୋର ପ୍ରଥମ ଦାୟିତ୍ୱ ସାରିଦେଲେ ଗଲା ।''

ବୋଉର ଚିଠି ପଢ଼ି ମୁଁ ନିଆଁବାଣ ହୋଇଗଲି । ମନେ ମନେ ଚିତ୍କାର କଲି, ''ନା, ଏ ବିବାହ ହୋଇ ପାରେ ନା । ମୋର ବିନା ଅନୁମତିରେ ପୁଣି ବିବାହ ? ଏ କଥା ପୁଣି ବୋଉ କିପରି ଚିନ୍ତା କରି ପାରିଲା । ମୁଁ ଯଦି ବର୍ତ୍ତମାନ ବିଭାହେବି, ତେବେ ମୀତା କି ଦୋଷ କରିଥିଲା ?''

ମୋର ମନେ ପଡିଗଲା ମୀତା କଥା । ମୋର ଛାତ୍ରୀ । ଯା'ର ଶିକ୍ଷା, ଦୀକ୍ଷା, ଗୁଣ ଓ ଅବିଗୁଣ ସବୁ କିଛି ମୋତେ ଭଲ ଲାଗେ ।

ସେଇ ମୀତା ଦିନେ ମୋତେ ଲେଖିଥିଲା, ''ମାନନୀୟେଷୁ, ସେଦିନ କ୍ଲାସକୁ ଆପଣ ପଢ଼ାଇବାକୁ ଆସିଲାବେଳେ ହାତରେ ଶ୍ରୀ ଅରବିନ୍ଦଙ୍କ ଛବିଥିବା ଅଙ୍ଗୁରୀୟଟିଏ ପିନ୍ଧି ଆସିଥିଲେ ।

ସେହି ଅଙ୍ଗୁରୀୟରୁ ମୁଁ ଜାଣିଥିଲି ଆପଣ ମୋର । ଯଦି ଆପଣ ମୋତେ ପାଇଲେ ଆପଣଙ୍କୁ ଭବିଷ୍ୟତରେ ବୁଡେଇ ଦେବି ନାହିଁ ବୋଲି ଭାବୁଥିବେ ତେବେ ମୋ ସପକ୍ଷରେ ସବୁଜ ସଂକେତ ଦେଇ ଧାଡିଟିଏ ଲେଖିବେ ।''

ମୀତାର ଚିଠି ପଢ଼ି ମୁଁ ହସିଥିଲି । ମୋ ଆଗରେ ମୋର ଉଜ୍ଜ୍ୱଳ ଭବିଷ୍ୟତ, ପିଏଚ.ଡି.... ବିଦେଶର ଅଧ୍ୟୟନ ଆଦି ବହୁବିଧ ସ୍ୱପ୍ନ ଆସି ଦେଖା ଦେଇଥିଲା । ମୀତାକୁ ସଫା ସଫା ଡାକି ବୁଝାଇ ଦେଇଥିଲି । ସେତେବେଳେ ମୀତା ହସି ହସି ପଦଟିଏ କହିଥିଲା, ''ଆପଣଙ୍କ ଭାଗ୍ୟ ହିଁ ମୋର ଦୁର୍ଭାଗ୍ୟ ।''

ମୁଁ କ୍ଷଣକ ପାଇଁ କିଛି ଚିନ୍ତା କରି ପାରିଲି ନାହିଁ ।

ବୋଉର ପ୍ରସ୍ତାବରୁ ଓହରିଯିବା ପାଇଁ ମୋର ସାମର୍ଥ୍ୟ ନଥିଲା ।

ମୋ ଆଗରେ ମୋ ଭବିଷ୍ୟତ, ଉଚ୍ଚଶିକ୍ଷା, ଜୀବନର ଆଶା, ଉଦ୍ଦୀପନା ସବୁ ଏକାକାର ହୋଇ ଉଠିଲା । ଅନ୍ତର ଆତ୍ମା ମୋର କାନ୍ଦି ଉଠିଲା ।

ଏହି ସମୟରେ ମଦନ ଆସି କହିଲା, ''ବାବୁ, ଚା, ଖୁବ କଡା ଚା କରି ଆଣିଚି ।''

ମୁଁ କହିଲି, ''ନା, ମଦନ । ଏଣିକି ଆଉ କଡା ଚା'ର ଆବଶ୍ୟକତା ନାହିଁ । ଧୀର ସୁଲଳିତ ତୃତୀୟ ଜ୍ୟୋସ୍ନାସମ ମୋର ନବବଧୂ ଆସୁଛି । ଆଉ ଦିନ ଚାରି ପାଞ୍ଚଟିରେ । ମୁଁ କଡା ଚା ଖାଇଲେ ତା'ର ନରମ ହୃଦୟକୁ ଖୁବ୍ ବାଧିବ । ତୁ ଯା, ମୋର ବେଡିଂ ପତ୍ର ବାନ୍ଧ । ମୁଁ ରାତି ନଅଟା ବସରେ ଘରକୁ ଚାଲିଯିବି ।''

ମୋ କଥା ଶୁଣି ମଦନ ଅବାକ୍ ହୋଇ ମୋତେ ଚାହିଁ ରହିଲା ।

ମୁଁ ମୋ ଆଗରେ ଥିବା ବୁଢ଼ାରଜା ପାହଡ ଓ ମନ୍ଦିରକୁ ଚାହିଁ ରହିଲି ।

ସେତେବେଳେ ସତେ ଯେମିତି ଅସଳ ଅପରାହ୍ନ ହାଇ ମାରୁଥିଲା ।

☆☆☆

# ଆପଣାଲୋକର ପ୍ରଶ୍ନ

କୌଣସି ଏକ କଲେଜରେ ନୂଆ ଯୋଗଦାନ କରିଥାଏ । ଚାକିରିରେ ଅବସ୍ଥାପିତ ହେବାର ତାହା ଥାଏ ପ୍ରଥମ ଯୋଗଦାନ । ମୋତେ ସମସ୍ତ ପରିବେଶ ନୂଆ ନୂଆ ମଧ୍ୟ ଲାଗୁଥାଏ । ଘରେ ପ୍ରଥମ ଥରକ ପାଇଁ ବାପା ବୋଉଙ୍କୁ ଛାଡି ଦୂରସ୍ଥାନକୁ ଯାଇଥିବା ହେତୁ ଟିକିଏ ଟିକିଏ ହୋମସିକ୍ ଲାଗୁଥାଏ ।

ମୁଁ ଯେ ହୋମସିକ୍ ଅନୁଭବ କରୁଛି ଏକଥା କିଏ ଜାଣନ୍ତୁ ବା ନଜାଣନ୍ତୁ ସେହି କଲେଜରେ ଆଗରୁ ଅବସ୍ଥାପିତ ଥିବା ମୋର କ୍ଲାସମେଟ୍ ମହେନ୍ଦ୍ର ବେଶ୍ ଜାଣିଥିଲା । ତେଣୁ ସେ ମଝିରେ ମଝିରେ ମୋର ଡିପାର୍ଟମେଣ୍ଟରେ ପହଞ୍ଚି ଯାଉଥିଲା । କେତେବେଳେ ଜଳଖିଆ ଦୋକାନ ତ କେତେବେଳେ ସିନେମା ଦେଖିବାକୁ ଯିବାକୁ ସେ ମୋତେ ବାଧ୍ୟ କରୁଥିଲା ।

ସେଦିନ ଡିପାର୍ଟମେଣ୍ଟରେ ବସି ମୁଁ ଘରକଥା ଭାବୁଥିଲି । ବାପାଙ୍କର ତାଗିଦ୍‌ଭରା ଶାସନ ସହିତ ମିଶିଥିବା ଅନ୍ତରର ସ୍ନେହ, ମା'ର ଅକୁହା ବାତ୍ସଲ୍ୟ ମମତା ମୋର ହୃଦୟର ଉଦ୍‌ବେଳନ ସୃଷ୍ଟି କରୁଥିଲା । ଏହି ସମୟରେ ମହେନ୍ଦ୍ର ସେଠାରେ ପହଞ୍ଚି କହିଲା, ''ହଇରେ, କ'ଣ ଭାବୁଚୁ । ତୋର ତ ଆଜି ପର୍ଯ୍ୟନ୍ତ ସେହି ହୋମସିକ୍‌ନେସ୍ ଗଲାନାହିଁ ।''

ମହେନ୍ଦ୍ରର କଥାଶୁଣି ଡିପାର୍ଟମେଣ୍ଟର ଅନ୍ୟ ଅଧ୍ୟାପକ, ଅଧ୍ୟାପିକା, ସେଠାକୁ ପ୍ରାକ୍‌ଟିକାଲ ନୋଟ୍ ସଂଶୋଧନ କରିବାକୁ ଆସିଥିବା ଛାତ୍ରଛାତ୍ରୀଗଣଙ୍କ ନଜର ମୋ ଉପରେ ପଡିଲା । ମୁଁ ନିଜକୁ ଟିକିଏ ଅପ୍ରତିଭ ମନେ କଲି । ତେଣୁ ମହେନ୍ଦ୍ରକୁ ଏକ ଜୋରଦାର ଉତ୍ତର ଦେବାକୁ ଯାଇଁ କହିଲି, ''ମହେନ୍ଦ୍ର, ହୋମସିକ୍ ହେବାର ବୟସ ମୋର ଆଉ ନାହିଁ ।''

ମହେନ୍ଦ୍ର କହିଲା, ''ହୋମସିକ୍‌ନେସ୍ ତୋର ବେଶୀ ଅଛିକି ନାହିଁ ସେ କଥା ତୁ ନିଜେ ତୋ ମନକୁ ପଚାରେ । ସେ ବିଷୟରେ ଏଠି ଆଲୋଚନା କରିବାର କୌଣସି

ଅବକାଶ ନାହିଁ । ଚାଲ ଯିବା ପ୍ରଫେସର ଦାସଙ୍କ ଡିପାର୍ଟମେଣ୍ଟ୍ ଆଡେ ଟିକେ ବୁଲିଯିବା ।''

ମୁଁ କଲେଜରେ ଜଏନ କଲାଦିନ କଲେଜ କରିଡର ଦେଇ ଜଣେ ବିରାଟକାୟ ବ୍ୟକ୍ତି ହସି ହସି ସିଗାରେଟ୍ ଖଣ୍ଡକ ଟାଣି ଟାଣି ଚାଲି ଯାଉଥିଲେ । ତାଙ୍କର ଶାନ୍ତ ସୌମ୍ୟ ଚେହେରା ଦେଖି ମୁଁ ପାଖରେ ଥିବା ଆଉ ଜଣେ ଅଧ୍ୟାପକ ବନ୍ଧୁଙ୍କୁ ପଚାରିଥିଲି, ''ସେ ଭଦ୍ରବ୍ୟକ୍ତି ଜଣକ କିଏ ?''

ସେ ମୋତେ କହିଥିଲେ ସେ ହେଉଛନ୍ତି ପ୍ରଫେସର ଦାସ । ଫିଜିକ୍ସ ଡିପାର୍ଟମେଣ୍ଟର ମୁଖ୍ୟ ପ୍ରଫେସର ।

ବାସ୍, ସେତିକିରେ ସେହିଦିନଠାରୁ ମୋ ମନରେ ପ୍ରଫେସର ଦାସଙ୍କ ପ୍ରତି ଏକ ଅହେତୁକ ଆକର୍ଷଣ ଦେଖାଦେଇଥିଲା । କେଜାଣି କାହିଁକି ମୁଁ ସେଦିନ ସେହି ମୁହୂର୍ତ୍ତରେ ସେହି ବ୍ୟକ୍ତିତ୍ୱ ଆଡକୁ ଢ଼ଳି ଯାଇଥିଲି । ତେଣୁ ମହେନ୍ଦ୍ର ପ୍ରଫେସର ଦାସଙ୍କ ପାଖକୁ ଯିବା ପାଇଁ ଯେଉଁ ପ୍ରସ୍ତାବ ଦେଲା ସେଥିରେ ମୁଁ ରାଜି ହୋଇଗଲି ।

ଆମେ ଦୁହେଁ ପ୍ରଫେସର ଦାସଙ୍କ ଚାମ୍ବରକୁ ଗଲୁ । ସେତେବେଳେ ସେ ଚାର୍ଲସ ଡାରଓ୍ୱିନ୍‌ଙ୍କ '' The Origin of Species'' ନାମକ ଏକ ପୁସ୍ତକ ପଢୁଥିଲେ । ଡାହଣ ହାତରେ ଧରିଥିବା ସିଗାରେଟ୍ ଖଣ୍ଡିକ ମଝିରେ ମଝିରେ ଟାଣୁଥିଲେ ।

ମହେନ୍ଦ୍ର ମୋତେ ଚିହ୍ନାଇ ଦେଇ କହିଲା, ''ସାର୍, ସେ ହେଉଛନ୍ତି ଡଃ ନାୟକ । ମୋର ସାଙ୍ଗ । ନିକଟରେ ଶିକ୍ଷା ବିଭାଗରେ ଅଧ୍ୟାପକ ରୂପେ ଜଏନ୍ କରିଛନ୍ତି ।''

ପ୍ରଫେସର ଦାସ ସଙ୍ଗେ ସଙ୍ଗେ ଚେୟାରରୁ ଉଠି ପଡିଲେ । ମୋ ସହିତ ହସି ହସି ହାଣ୍ଡସେକ୍ କଲେ । କହିଲେ, ''ଏ କଲେଜ ହେଉଛି ଶିକ୍ଷା ବିଭାଗର ଏକ ଶିକ୍ଷାନୁଷ୍ଠାନ । ସେଥିରେ ପୁଣି ଆପଣ ଖୋଦ ଶିକ୍ଷା ବିଭାଗର ଏକ ଅଧ୍ୟାପକ । ଏହା ଆମ ପାଇଁ କ'ଣ ଗୌରବର ବିଷୟ ନୁହେଁ ।''

ଆମେ ଦୁହେଁ ପ୍ରଫେସର ଦାସଙ୍କ ନିର୍ଦ୍ଦେଶରେ ତାଙ୍କ ଟେବୁଲ୍ ଆଗରେ ପଡିଥିବା ଚେୟାର ଉପରେ ବସିଲୁ । ମୁଁ କହିଲି, ''ସାର୍, ଆପଣଙ୍କ କଥା ମୁଁ ବୁଝି ପାରିଲି ନାହିଁ ।''

ପ୍ରଫେସର ଦାସ ହସି ହସି କହିଲେ, ''ଆମେ ପିଲାମାନଙ୍କୁ କେତେକ ଜ୍ଞାନ ଓ ତଥ୍ୟ ସମ୍ପର୍କରେ ପରିଚିତ କରାଉଛୁ । କିନ୍ତୁ ଶିକ୍ଷା ଅଧ୍ୟାପକମାନେ ସେମାନଙ୍କର

ବ୍ୟବହାରର ପରିବର୍ତ୍ତନ ଆଣିବା ସହିତ ସେମାନଙ୍କୁ ସମସ୍ତ ପରିସ୍ଥିତିରେ ଉପଯୋଜନ କରିବାକୁ ଶିକ୍ଷା ଦେଉଛନ୍ତି । ଏହା ସହିତ ସେମାନଙ୍କ ଚରିତ୍ର ଗଠନରେ ସାହାଯ୍ୟ କରୁଛନ୍ତି ଓ ଏକ ବୃହତ୍ତର ସମାଜ ପାଇଁ ପ୍ରସ୍ତୁତ କରୁଛନ୍ତି । ତାହାହିଁ ଆମ ପାଇଁ ଗୌରବ ।''

ଶିକ୍ଷା ସମ୍ପର୍କରେ ପ୍ରଫେସର ଦାସଙ୍କ ଏପରି ମନ୍ତବ୍ୟ ଶୁଣି ମୋତେ ଖୁସି ଲାଗିଲା । ପୁଣି ଦୁଃଖ ବି ଲାଗିଲା ନିଜେ ନିଜକୁ ଆତ୍ମ ସମୀକ୍ଷା କରିବାରୁ । ଆମେ ଶିକ୍ଷକକୁଳ କେତେ ଦୂର ପିଲାମାନଙ୍କ ଚରିତ୍ର ଗଠନରେ ସହାୟକ ହେଉଛୁ ତାହା କେବଳ ଆଜିର ସମାଜ କହି ପାରିବ । ମାତ୍ର ଏ କଥା ସତଯେ ପ୍ରଫେସର ଦାସଙ୍କ ଭଳି ଶିକ୍ଷାବିତ୍‌ଗଣ ସବୁବେଳେ ପିଲାମାନଙ୍କ ଚରିତ୍ରଗଠନରେ ନିଶ୍ଚିତ ଭାବେ ଆତ୍ମନିୟୋଗ କରିଛନ୍ତି । ଏହା ଫଳରେ ଶିକ୍ଷା, ଶିକ୍ଷାୟତନ ଓ ତହିଁର ମର୍ଯ୍ୟାଦା ରହି ପାରିଛି ।

ସେଦିନ ପ୍ରଫେସର ଦାସଙ୍କ ସହିତ କେତେକ ଅନ୍ତରଙ୍ଗ ଆଳାପ ହେଲା । ସେହି ଆଳାପ ମଧ୍ୟରେ ମୁଁ ସେହି ପ୍ରବୀଣ ଫିଜିକ୍ସ ଜ୍ଞାନଭିତ୍ତିକ ଶିକ୍ଷାବିତ୍‌ଙ୍କଠାରୁ କଥାକଥାକେ ମଣିଷ ଜୀବନ ଉପରେ ଫିଜିକ୍ସ ଶାସ୍ତ୍ରର ଗୁରୁତ୍ୱ ଓ ପ୍ରଭାବ ସମ୍ପର୍କରେ ଅଳ୍ପ କିଛି ଶିକ୍ଷା କଲି । ତାଙ୍କ ପାଖରୁ ବିଦାୟ ନେଲାବେଳେ ସେ ମୋତେ କହିଲେ, ''ଡଃ ନାୟକ, ଆପଣ ଆମ କ୍ୱାର୍ଟର୍ସକୁ ବୁଲି ଆସିବେ । କିଛି ବୌଦ୍ଧିକ ଆଲୋଚନାରେ ସମୟ କଟାଇବା ।''

ସେଦିନ ରବିବାର ହୋଇଥାଏ । ମନଟା କେଜାଣି କାହିଁକି ଭଲ ଲାଗୁ ନଥାଏ । ଭାବୁଥାଏ ସିନେମା ଯାଇ ସମୟ କାଟିନେବି । କିନ୍ତୁ ଅଧିକାଂଶ ସିନେମାରେ ହତ୍ୟା, ସଙ୍ଘର୍ଷ ଆଦି ବିଷୟ ଦେଖି ମୋ ମନରେ କ୍ରମଶଃ ସିନେମା ପ୍ରତି ବିରକ୍ତିଭାବ ଆସିଯାଇଥାଏ । କ'ଣ କରିବି, କିପରି ସନ୍ଧ୍ୟାସମୟ କାଟିବି ଭାବୁ ଭାବୁ ମୋର ପ୍ରଫେସର ଦାସଙ୍କ କଥା ମନେ ପଡିଲା । ସଙ୍ଗେ ସଙ୍ଗେ ତାଙ୍କ କ୍ୱାର୍ଟର୍ସ ଆଡେ ବାହାରି ପଡିଲି ।

ଘରର କଲିଙ୍ଗ୍ ବେଲ୍ ବାଜିବା ମାତ୍ରେ ପ୍ରଫେସର ଦାସ ଆସିଲେ । ମୋତେଦେଖି ଭାରି ଖୁସି ହେଲେ । କହିଲେ, ''ଆପଣ ଆସିଲେ ଭଲ ହେଲା, ମୋତେ ବଡ ବୋର ଲାଗୁଥିଲା ।''

ଏହା କହି ପ୍ରଫେସର ଦାସ ମୋତେ ତାଙ୍କ ଡ୍ରଇଂରୁମ୍ ଆଡକୁ ବାଟ କଢ଼େଇ ନେଇଗଲେ । ଡ୍ରଇଁରୁମ୍‌ରେ ପଡିଥିବା ସୋଫା ସେଟ୍‌ରେ ଆମେ ଦୁହେଁ ବସିଲୁ । ମୁଁ

ଲକ୍ଷ୍ୟକଲି, ଟିପୟ ଉପରେ ଥିବା ଆସ୍‌ଟ୍ରେଟି ସିଗାରେଟ୍ ଗୁଣ୍ଡରେ ଅଧାଅଧି ଭରପୂର ହୋଇଛି । ପ୍ରଫେସର ଦାସ ଯେ ଜଣେ ଚେନ୍ ସ୍ମୋକର ଏକଥା ମୋତେ ଆଉ ଅଛପା ରହିଲା ନାହିଁ ।

ପ୍ରଫେସର ଦାସ ମୋତେ ନୂତନ ଶିକ୍ଷା ପଦ୍ଧତି ସମ୍ପର୍କରେ ପଚାରିଲେ । ମୁଁ କ'ଣ ଆରମ୍ଭ କରୁ ନକରୁଣୁ ସେ କହିଲେ, ''କୌଣସି ଶିକ୍ଷା ପଦ୍ଧତି କେବେ ଖରାପ ନଥିଲା । ରାଧାକ୍ରିଷ୍ଣନ୍, ମୁଦଲିୟର, କୋଠାରୀ କମିଶନଙ୍କ ଠାରୁ ଆରମ୍ଭ କରି ସଂପ୍ରତି ଚଳୁଥିବା ନୂତନ ଶିକ୍ଷା ପଦ୍ଧତି କେବଳ ପୁରୁଣା ମଦକୁ ନୂଆ ବୋତଲରେ ରଖିଲା ଭଳି । ଯଦି କୌଣସି ଏକ କମିଶନଙ୍କ ସୁପାରିଶକୁ କଡାକଡି ପାଳନ କରାଯାଇପାରନ୍ତା, ତେବେ ଦେଶର ଶିକ୍ଷାକ୍ଷେତ୍ରରେ ଏତେ ଦୁର୍ଗତି ପଡି ନଥାନ୍ତା । ଗାନ୍ଧୀଙ୍କର ମୌଳିକ ଶିକ୍ଷାନୀତି କ'ଣ ପ୍ରକୃତିବାଦ (Naturalism), ଆଦର୍ଶବାଦ (Idealism) ଓ ବାସ୍ତବବାଦ (Pragmatism) ଉପରେ ପର୍ଯ୍ୟବସିତ ନୁହେଁ ?''

ଏତକ କହିବା ମଧ୍ୟରେ ପ୍ରଫେସର ଦାସ ଦୁଇଟି ଉଇଲସ୍ ଫିଲଟରର ନିକୋଟାଇନ୍‌କୁ ହଜମ କରି ଦେଇ ସାରିଥାନ୍ତି । ପୁଣି ସେ ଆଉ ଗୋଟିଏ ସିଗାରେଟ୍ ଯେତେବେଳେ ଧରି ସେଥିରେ ଅଗ୍ନି ସଂଯୋଗ କରିବାକୁ ଲାଗିଲେ, ସେତେବେଳେ ମୁଁ ସତୃଷ୍ଣ ନୟନରେ ତାଙ୍କ ଆଡକୁ ଚାହିଁ ରହିଲି । ଜଣେ ନିଖୁଣ ଚିତ୍ରକର ନିଜର ତୂଳୀ ଓ ରଙ୍ଗ ମାଧ୍ୟମରେ ନିଜ ଜୀବନର ସୁଖ ସଳିତାକୁ ତିଳତିଳ କରି ଜାଳି ଯେପରି ଏକ ଅହେତୁକ ଖିଆଲି ସ୍ୱପ୍ନରେ ବିଭୋର ଥାଏ, ସେହିପରି ଖଣ୍ଡିଏ ପରେ ଖଣ୍ଡିଏ ସିଗାରେଟ୍ ଶୋଷି ପ୍ରଫେସର ଦାସ ମଧ୍ୟ କୌଣସି ଏକ ଅଭୁଲା ସ୍ୱପ୍ନରେ ବିଭୋର ହୋଇଗଲେ ।

ପଦାର୍ଥ ବିଜ୍ଞାନ ସହିତ ଜୀବନର ପ୍ରଭାବ ସମ୍ପର୍କରେ ମୋ ସହିତ ଅତୀତରେ ଆଲୋଚନା କରିଥିବା ପ୍ରଫେସର ସିଗାରେଟ୍‌ର ଜ୍ୱଳନ ମଧ୍ୟରେ ଯେ କାହିଁକି ହନ୍ତସନ୍ତ ହେଉଛନ୍ତି ସେ କଥା ମୁଁ ବୁଝି ପାରିଲିନି । ଗୋଟିଏ ପକ୍ଷରେ ଶିକ୍ଷାର ତତ୍ତ୍ୱ ଓ ଅନ୍ୟପଟେ ତା'ର ଯଥାର୍ଥ ପ୍ରୟୋଗ ମଧ୍ୟରେ କୌଣସି ସ୍ଥାନରେ ଯେ ତ୍ରୁଟି ରହିଗଲା, - ଏକଥା ମୋତେ ବୁଝିବାକୁ ବାକି ରହିଲା ନାହିଁ । ମୁଁ ମଧ୍ୟ ପ୍ରଫେସର ଦାସଙ୍କ ଡ୍ରଇଂରୁମ୍‌ର ଧୂମାୟିତ ପରିବେଶ ଯୋଗୁଁ ଅସ୍ତବ୍ୟସ୍ତ ହୋଇ ଉଠିଲି । ହଠାତ୍ ସେଠାରୁ ପଳାଇ ଆସିବାକୁ ଇଚ୍ଛାଥିଲେ ମଧ୍ୟ ଆସି ପାରିଲି ନାହିଁ ।

କିଛି ସମୟ ପରେ ପ୍ରଫେସର ଦାସଙ୍କୁ ପଚାରିଲି, ''ସାର୍ ! ଆପଣ ଏତେ ସିଗାରେଟ୍ ଖାଉଛନ୍ତି କାହିଁକି ?''

ମୋ କଥାଶୁଣି ପ୍ରଫେସର ଦାସ ଟିକିଏ ହସିଲେ ।

ସେତେବେଳକୁ ପୂର୍ବର ସିଗାରେଟ୍ ସରି ଆସିଥିଲା । ସେ ସେହି ସିଗାରେଟ୍ ସହିତ ଆଉ ଏକ ନୂତନ ସିଗାରେଟ୍ ଲଗାଇ ସେଥିରେ ପୁଣି ଅଗ୍ନି ସଂଯୋଗ କଲେ ।

ମୁଁ ଆଉ ପ୍ରଫେସର ଦାସଙ୍କ ଏତାଦୃଶ ବ୍ୟବହାର ସହି ପାରିଲି ନାହିଁ । ମୋ ଆଗରେ ମୁଁ ଭଲ ପାଉଥିବା ଜଣେ ବ୍ୟକ୍ତି ଯେ ନିଜକୁ ଏପରି ଜାଳିପୋଡ଼ି ଦିଅନ୍ତୁ ଏହା ମୁଁ ଚାହୁଁନଥିଲି । ତେଣୁ ପ୍ରଫେସର ଦାସଙ୍କୁ ପଚାରିଲି, ''ସାର୍, ଆପଣ ଯେ ମୋ ପ୍ରଶ୍ନର କୌଣସି ଉତ୍ତର ଦେଲେ ନାହିଁ ।''

ପ୍ରଫେସର ଦାସ କହିଲେ, ''ମୁଁ ଜାଣି ଜାଣି ତୁମକୁ ଉତ୍ତର ଦେଲି ନାହିଁ । ତୁମର ବୟସ ମୋ ତୁଳନାରେ ଖୁବ୍ କମ୍ । ମୁଁ ତୁମକୁ ପୁଅ ପରି ମନେ କରେ । ତେଣୁ ସାମୟିକ ଭାବେ ଶରୀରକୁ କ୍ଷତି କରି ମୃତ୍ୟୁ ସ୍ରୋତ ମଧ୍ୟକୁ ମୋତେ ଟାଣି ନେଉଥିବା ସିଗାରେଟ୍ ଯେ କେତେ ଦୂର ମୋର ଦୁଃଖକୁ ଲାଘବ କରେ ଏହା ମୁଁ ତୁମକୁ କିପରି ବୁଝାଇବି ।''

ମୁଁ ପଚାରିଲି, ''ସାର୍, ଆପଣଙ୍କୁ ମୁଁ ଭଲପାଏ । ଭକ୍ତିକରେ । ଆପଣଙ୍କୁ ସିଗାରେଟ୍ ନଷ୍ଟ ନକରୁ ମୁଁ ଚାହେ । ଆପଣ ଏମିତି କେଉଁ କାମ କରିଛନ୍ତି ଯେ ତା'ର ପାପରୁ ନିସ୍ତାର ପାଇବା ପାଇଁ ଗୋଟିଏ ପରେ ଗୋଟିଏ ସିଗାରେଟ୍ ଖାଇଚାଲିଛନ୍ତି ?''

ମୋର ଆବେଗଭରା ପ୍ରଶ୍ନଯୋଗୁଁ ପ୍ରଫେସର ଦାସଙ୍କ ମୁଖମଣ୍ଡଳ ଟିକିଏ ଗମ୍ଭୀର ହୋଇଗଲା । ସେ କ'ଣ କହିବେ ନ କହିବେ ବୋଲି ଭାବି ଟିକିଏ ନୀରବ ରହିଗଲେ । ମୁଁ ଭାବିଲି ସେ ପ୍ରକୃତରେ ମୋ ଆଗରେ କିଛି କହିବାକୁ ସଂକୋଚବୋଧ କରୁଛନ୍ତି । ତେଣୁ କହିଲି ''ସାର୍, ମୋତେ କ୍ଷମା କରିବେ । କୌଣସି ବ୍ୟକ୍ତିର ବ୍ୟକ୍ତିଗତ ଜୀବନ ବିଷୟରେ ପ୍ରଶ୍ନ କରିବା ଠିକ୍ ନୁହେଁ ବୋଲି ମୁଁ ଜାଣେ । ମୁଁ ମଧ୍ୟ ଏକଥା ଭଲ ଭାବରେ ଜାଣେ ଯେ ଆପଣ ମୋତେ ପୁଅ ଭଳି ସ୍ନେହ କରନ୍ତି । କିନ୍ତୁ ଗୋଟିଏ ସମୟ ଆସେ ପୁଅ ମଧ୍ୟ ବନ୍ଧୁଭଳି କାମ କରେ । ସେହି ଦୃଷ୍ଟିକୋଣରୁ ଆପଣଙ୍କୁ ପଚାରିଦେଲି ।''

ପ୍ରଫେସର ଦାସ କହିଲେ, ''ଏ ପ୍ରଶ୍ନ କେବଳ ତୁମେ ମୋତେ ଆଜି ପଚାରୁ ନାହଁ । ଆଗରୁ ମଧ୍ୟ ମୋତେ କେତେ ଜଣ ପଚାରିଛନ୍ତି । ମୁଁ ହସି ହସି ସେମାନଙ୍କ ପ୍ରଶ୍ନକୁ ଉଡେଇ ଦେଇଛି । ଆଜି ମୋ ବିଷୟରେ ଜାଣିବା ପାଇଁ ତୁମ ମନରେ ଯେତିକି ଆଗ୍ରହ ଅଛି ସେତିକି ଦୁଃଖ ମଧ୍ୟ ଅଛି । ତେଣୁ ତୁମେ ଜାଣ ଯେ ମୁଁ ପ୍ରେମ ବିବାହ କରିଛି ।''

ପ୍ରଫେସର ଦାସଙ୍କ କଥାଶୁଣି ମୋତେ ଆଶ୍ଚର୍ଯ୍ୟ ଲାଗିଲା । କହିଲି, ''ସାର୍, ଖୁବ୍ ଭଲ କଥା । ଜୀବନରେ ବିବାହ କରିବ ତ ପ୍ରେମ ବିବାହ କରିବ । ଆପଣ ସେ ବିବାହ କରିଛନ୍ତି । ଆପଣ ଜାଣି ଖୁସି ହେବେ ଯେ ମୁଁ ମଧ୍ୟ ପ୍ରେମ ବିବାହ କରିଛି ।''

ପ୍ରଫେସର ଦାସଙ୍କ ଆଖି ଦୁଇଟି ମୋଟା ଫ୍ରେମ ଓ ମୋଟା କାଚ ଦେଇ ଅଧିକ ବିସ୍ଫାରିତ ହୋଇଗଲା । ସେ କହିଲେ, ''ପ୍ରେମ ବିବାହ ଯେ ଖରାପ ସେ କଥା ମୁଁ କହୁନାହିଁ । ତୁମେ ପ୍ରେମ ବିବାହ କରିଛ । ତେଣୁ ତୁମେ ଖୁସି । ମାତ୍ର ମୁଁ ପ୍ରେମରେ ପଡି ବିବାହ କରିଛି ।''

''ପ୍ରେମରେ ପଡି ବିବାହ କରିବା କ'ଣ ପ୍ରେମ ବିବାହଠାରୁ ସମ୍ପୂର୍ଣ୍ଣ ଅଲଗା ?''

ପ୍ରଫେସର ଦାସ କହିଲେ, ''ହଁ, ସମ୍ପୂର୍ଣ୍ଣ ଅଲଗା । ମଣିଷ ପଡେ କେତେବେଳେ ? ଯେତେବେଳେ ମଣିଷର ପାଦର ସ୍ଥିରତା ନଥାଏ, ମନ ସହିତ ଦେହର ସମନ୍ୱୟ ରହେ ନାହିଁ, ସେତେବେଳେ ହିଁ ମଣିଷ ପଡେ । ସେହିପରି ଯେତେବେଳେ ଜଣେ ନିଜର ଉପଯୁକ୍ତ ବୁଦ୍ଧି ଓ ବିବେକ ଦ୍ୱାରା ପରିଚାଳିତ ନହୋଇ ଆଉ ଜଣକ ସହିତ ସମ୍ପର୍କ ରଖେ ସେତେବେଳେ ସେ ସମ୍ପର୍କ କ୍ଷଣିକ ପାଇଁ ମଧୁର ହେଲେ ମଧ୍ୟ ପରବର୍ତ୍ତୀ ଜୀବନରେ ବିଷରେ ପରିଣତ ହୋଇଥାଏ । ତେଣୁ ପ୍ରେମରେ ପଡି କରିଥିବା ତଥାକଥିତ ପ୍ରେମବିବାହ କେତେଦୂର ଗ୍ରହଣୀୟ, ତାହା ତୁମେ ହୁଏତ ବର୍ତ୍ତମାନ ବୁଝି ପାରୁଥିବ ।''

ମୁଁ ପ୍ରଫେସର ଦାସଙ୍କ ମୁହଁକୁ ଚାହିଁଲି । ସେ ମଧ୍ୟ ମୋ ଆଡକୁ ଚାହିଁ କହି ଚାଲିଲେ, '' ମୁଁ ଅରୁଣାକୁ ପ୍ରେମରେ ପଡି ବିବାହ କଲି । ବାପାଙ୍କର ଏ ବିବାହରେ ଇଚ୍ଛା ନଥିଲା । ତେଣୁ ସେ ମୋତେ ଗୋଟିଏ ପ୍ରଶ୍ନ କରିଥିଲେ, ''ତୁ ତ ଜାଣୁ ଚୌଧୁରୀ ପରିବାର କେତେ ଉଦ୍ଧତ । କଥା କଥାକେ ଲୋକମାନଙ୍କର ସମ୍ମାନ ଉପରେ ଆଞ୍ଚ ଆଣିବା ସେ ପରିବାରର ସାନଠାରୁ ବଡ ପର୍ଯ୍ୟନ୍ତ ସମସ୍ତଙ୍କର କାମ । ସେଇ ଚୌଧୁରୀ ପରିବାରର ଝିଅ ତୋ ସହିତ ମିଳିମିଶି ତୋର ସମ୍ମାନରଖି ଚଳିବ ତ ?''

ପ୍ରଫେସର ଦାସ କହିଲେ, ''ସେତେବେଳକୁ ମୁଁ ଅରୁଣା ପ୍ରେମରେ ପଡି ଅନ୍ଧ ହୋଇଯାଇଥିଲି । ତେଣୁ ବାପାଙ୍କ ପ୍ରଶ୍ନର ଗୁରୁତ୍ୱ ବୁଝି ପାରିଲିନି । କହିଲି, ''ବାପା, ଆପଣଙ୍କ ଜୀବନରେ ଆପଣ ଅନେକ କାମ କରିଛନ୍ତି । ସବୁ କାମ ଯେ ସଫଳ ହୋଇଛି ତାହା ନୁହେଁ । ତେଣୁ ମୋ ଜୀବନରେ ମୁଁ ଗୋଟିଏ କାମ କରିବାକୁ ଯାଉଛି । ଆପଣ ମୋତେ ସେ କାମରେ ସାହାଯ୍ୟ କରନ୍ତୁ । ମୋତେ ଆଶୀର୍ବାଦ କରନ୍ତୁ ।''

ମୋର ଉତ୍ତର ଶୁଣି ବାପା ମୋତେ କୁଣ୍ଢେଇ ପକାଇଲେ ।

ବିବାହର ସାହାନାଇ ବାଜି ଉଠିଲା ।

ତା'ପରେ ?? ମୁଁ ପଚାରିଲି

ପ୍ରଫେସର ଦାସ କହିଲେ, ''ସମୟ ଗଡି ଚାଲିଲା । ଏପରି ଏକ ସ୍ତ୍ରୀ ପାଇଲି ଯାହାକୁବି ପାଖରେ ରଖି ପାରିଲିନି କି ଛାଡି ପାରିଲିନି । ତାହାହିଁ ମୋତେ ଦୁଃଖ ଦେଲା । ସବୁଠାରୁ ବେଶୀ ଦୁଃଖ ଲାଗିଲା ମୋର ସାନଭାଇମାନେ ମୋ ଭଳି ବଡ ଭାଇର ପଦାଙ୍କ ଅନୁସରଣ କରି ଗୋଟିଏ ପରେ ଗୋଟିଏ ପ୍ରେମ ବିବାହ କରି ଚାଲିଲେ । ଜାତି ଧର୍ମ ବର୍ଣ୍ଣର ବିଚାର ରହିଲା ନାହିଁ । ମାତ୍ର ସବୁଠାରୁ ସୁଖର କଥା ଥିଲା ସେ ସବୁ ଦେଖିବାକୁ ବାପା ନଥିଲେ । ମୋର ବିବାହର ଅଳ୍ପ କେଇଦିନ ମଧ୍ୟରେ ସେ ଆଖିବୁଜି ଦେଇଥିଲେ ।''

ପ୍ରଫେସର ଦାସଙ୍କ ସ୍ୱୀକାରୋକ୍ତି ଯନ୍ତ୍ରଣା ଦାୟକ ଥିଲା । କିନ୍ତୁ ଯନ୍ତ୍ରଣାରୁ ଉପଶମ ପାଇବା ପାଇଁ ଯେ ସିଗାରେଟ୍ ଏକ ମାତ୍ର ମାଧ୍ୟମ ତାହା ବୁଝିବା ମଧ୍ୟ କଷ୍ଟଦାୟକ ଥିଲା । ତେଣୁ ପଚାରିଲି, ''ସାର୍, ଆପଣଙ୍କ ଜୀବନ ବିଷୟରେ ମୁଁ ଆଉ ଅଧିକ କିଛି ଜାଣିବାକୁ ଚାହେ ନାହିଁ । ଆପଣ ଦୟାକରି ଏ ସିଗାରେଟ୍ ଖାଇବା ଛାଡି ଦେଇ ପାରନ୍ତେ ନି ?''

ମୋର ଶିଶୁସୁଲଭ ପ୍ରଶ୍ନ ଶୁଣି ପ୍ରଫେସର ଦାସ ଠୋ ଠୋ ହସିଲେ । କହିଲେ ''ମାଇଁ ଚାଇଲଡ୍, ତୁମର ବୁଝିବା ଉଚିତ୍ ଯେ କୌଣସି ବ୍ୟକ୍ତି ପକ୍ଷରେ ସିଗାରେଟ୍ ଛାଡିବା ଓ ନଛାଡିବା କେତେକ ସର୍ତ୍ତ ଉପରେ ନିର୍ଭର କରେ । ମୋ ଜୀବନରେ ଏମିତି କୌଣସି ସର୍ତ୍ତନାହିଁ ଯେ ଯାହାକୁ ଆଖି ଆଗରେ ରଖି ମୁଁ ସିଗାରେଟ୍ ଖାଇବା ଛାଡିଦେବି । ମୁଁ ଜାଣେ ଯେ ଅତ୍ୟଧିକ ସିଗାରେଟ୍ ଖାଇବା ଦ୍ୱାରା ଜୀବନରେ ଏକ ଚରମ ଯନ୍ତ୍ରଣାର ଦିନ ଆସିବ । ମାତ୍ର ପ୍ରତିଦିନ ଯନ୍ତ୍ରଣାକୁ ଉପଶମ କରୁଥିବା ଏହି ସିଗାରେଟ୍ ର ଦାନ ସେହି ଯନ୍ତ୍ରଣାଠାରୁ ଯଥେଷ୍ଟ ଭଲ ।''

ମୁଁ ଦେଖିଲି ପ୍ରଫେସର ଦାସଙ୍କୁ ବୁଝାଇବା ଏକ ନିର୍ବୋଧତା ଛଡା ଆଉ କିଛି ନୁହେଁ । ଏକ ନିର୍ଦ୍ଦିଷ୍ଟ ମୂଲ୍ୟବୋଧକୁ ସେ ଆପଣାଇ ନେଇଛନ୍ତି । ମୁଁ ତାଙ୍କ ପାଖରୁ ବିଦାୟ ନେଲା ବେଳେ କହିଲି, ''ସାର୍, ସିଗାରେଟ୍ ସହିତ ଯେ ଆପଣଙ୍କ ଜୀବନ ସହିତ ସମ୍ପର୍କ ଅଛି ବୋଲି ଜାଣିଥିଲେ ମୁଁ ଆପଣଙ୍କୁ ସେ ସମ୍ପର୍କୀୟ ପ୍ରଶ୍ନ ପ୍ରଚାରି ଆଘାତ ଦେଇ ନଥାନ୍ତି ।''

ପ୍ରଫେସର ଦାସ ହସି ହସି କହିଲେ, ''ଆପଣାରଲୋକର ପ୍ରଶ୍ନ ପରା ଅତି ଆପଣାର । ସେଥିରେ ଦୁଃଖ ନଥାଏ !''

★ ★ ★

# ହୃଷୀକେଶ ଯାତ୍ରା

**ସେ**ଦିନ ହୃଷୀକେଶ ଅଭିମୁଖେ ପୁରୁଷୋତ୍ତମ ଏକ୍ସପ୍ରେସ୍‌ରେ ମୁଁ ଭୁବନେଶ୍ୱରରୁ ବାହାରିଥାଏ । ଦେହରେ ଗୈରିକ ବସ୍ତ୍ର । ହାତରେ ପୁରୀରୁ କିଣିଥିବା କମଣ୍ଡଳୁ ଓ ଗୋଟିଏ ବାଡ଼ି । ମନରେ ଅସରନ୍ତି ଆନନ୍ଦ ।

ଗାଡ଼ି ଆସିବାକୁ ଆଉ ଅଳ୍ପ କେତୋଟି ମିନିଟ୍ ବାକି ଥାଏ । ପ୍ଲାଟଫର୍ମର ଗୋଟିଏ କୋଣରେ ବସି ସୁଦୂର ଅତୀତ କଥା ଚିନ୍ତା କରୁଥାଏ । କେତେ କଥା, କେତେ ସ୍ମୃତି ମନ ମଧ୍ୟରେ ଆନ୍ଦୋଳିତ କରୁଥାଏ । ମଝିରେ ମଝିରେ ପ୍ରିୟାପ୍ରତି ଲେଖିଥିବା ଚିଠି ଥିବା ଲଫାପା ଗୋଟିଏ ବାହାର କରି ଦେଖୁଥାଏ । ତାହା କେବଳ ଗୋଟିଏ ସାଧାରଣ ଲଫାପା ନଥିଲା, ବରଂ ଥିଲା ମୋର ଜୀବନର ପ୍ରୀତି, ପ୍ରଣୟ ଓ ପରିଣତ ବୟସର ଆଶା ଓ ଅଭୀପ୍ସାର କଥା ଓ କାହାଣୀ । ଯେଉଁକଥା ଓ କାହାଣୀ ଅଭିପ୍ରେତ ଥିଲା ମୋର ପ୍ରଥମ ପ୍ରଣୟିନୀ ପ୍ରିୟା ପ୍ରତି । ସେଥିରେ ଭରିଥିଲା ମୋର ସ୍ନେହ, ଶ୍ରଦ୍ଧା, ରାଗ ଓ ଅଭିମାନ ଜଣକ ପାଇଁ । ମୋର ପ୍ରିୟା ପାଇଁ ।

ମୁଁ ଜାଣି ନଥିଲି ସେଠାରେ ଆସି ମୋର ବନ୍ଧୁ ନକୁଳ ପହଞ୍ଚିଯିବ । ଅପ୍ରତ୍ୟାଶିତ ଭାବେ ମୋତେ ପଚାରିବ ! ''ଆରେ ! ତୋର ଏ କି ବେଶ । କେବେଠୁଁ ବାବାଜୀ ହେଲୁ ବେ ?''

ନକୁଳକୁ ଦେଖି ମୁଁ ମନେ ମନେ ବଡ ବିରକ୍ତ ହେଲି । କିନ୍ତୁ ବାବାଜୀ ହେଲେ ଯେ କ୍ରୋଧକୁ ପ୍ରଶମିତ ଓ ଜୟ କରିବାକୁ ହୁଏ ତାହା ଜାଣିଥିଲି । ତେଣୁ ମୋ ଜୀବନର ବିତୃଷ୍ଣାକୁ ଚାପିରଖି କହିଲି, ''ଆଜିଠାରୁ ବାବାଜୀ ହେଲି ।''

ନକୁଳ କହିଲା, ''ଆଜିଠାରୁ ! ମାନେ ?''

''କ'ଣ ବିଶ୍ୱାସ କରୁନାହୁଁ, ମୁଁ ଆଜିଠାରୁ ଚାଲିଲି ହୃଷୀକେଶ ଅଭିମୁଖେ ।'' ହସି ହସି ନକୁଳକୁ କହିଲି ।

ଗୌତମ ବୁଦ୍ଧଙ୍କ ଭଳି ମୋର ପ୍ରଶାନ୍ତ ଚେତା ମୁଖମଣ୍ଡଳ ଓ ନିର୍ଭୀକ ତଥା ନିଚ୍ଛକ ଉତ୍ତର ଶୁଣି ମୋ କଥାକୁ ନକୁଳ ସତ ବୁଝିଲା ।

ମୁଁ ଲକ୍ଷ୍ୟକଲି ତା'ର ହସ ହସ ମୁହଁ ଟିକିଏ ଫିକା ପଡିଗଲା । ସେ ଟିକିଏ ରହିଯାଇଁ ପଚାରିଲା ''ଏକଥା କ'ଣ ପ୍ରିୟା ଭାଉଜ ଜାଣିଛନ୍ତି ?''

ନା, ମୁଁ ଉତ୍ତର ଦେଲି ।

ଭୀରୁ, ଯଦି ବାବାଜୀ ହେବାରେ ଥିଲା, ତେବେ ଘରେ ଜଣାଇ ଆସିଲୁ ନାହିଁ କାହିଁକି ?

ମୁଁ ଏଥରକ ଟିକିଏ ନକୁଳ ଉପରେ ବିରକ୍ତ ହୋଇ କହିଲି, ''ପ୍ରିୟାକୁ କାହିଁକି କହିବି ? ତୁ ଏତକ ଜାଣ ନକୁଳ, ମୋର ଜୀବନରେ ବୈରାଗ୍ୟ ଆସିଛି । ଯେତେବେଳେ ମନ ଓ ପ୍ରାଣରେ ବୈରାଗ୍ୟର ଚିନ୍ତା ଓ ଚେତନା ଆନ୍ଦୋଳିତ ହୁଏ, ସେତେବେଳେ କାମନାରହିତ ମନ ଓ ପ୍ରାଣ ଉର୍ଦ୍ଧମୁଖୀ ହୁଏ । ଖୋଜେ ମୁକ୍ତି ।''

''ଓଃ ସେଇଥିପାଇଁ ତୁ ଆଜି ପରିଣତ ବୟସରେ ପ୍ରିୟା ଭାଉଜଙ୍କୁ ଛାଡି ଗୌତମ ବୁଦ୍ଧଙ୍କ ଭଳି ଗୃହତ୍ୟାଗୀ ହେବାକୁ ବସିଛୁ । ଆଉ ଲୁଚି ଲୁଚି ଏ ଷ୍ଟେସନରେ ପହଞ୍ଚିଛୁ ।

ନକୁଳ ଯେ ମୋର ବାବାଜୀ ହେବା କଥାକୁ ଆଦୌ ପସନ୍ଦ କରୁନି ଏକଥା ତା'ର ମୋ ପ୍ରତି ଆକ୍ଷେପରୁ ମୁଁ ବିଶେଷ ଭାବେ ବୁଝି ପାରିଲି । ହସି ହସି କହିଲି, ''ନକୁଳ ତୋର ଗର୍ବ କରିବାର କଥା... !''

କେଉଁଥିପାଇଁ ? ନକୁଳ ପଚାରିଲା ।

ମୁଁ ମୋର ଛାତି ଫୁଲାଇ କହିବାକୁ ଆରମ୍ଭ କଲି, ''ଆରେ ମୁଁ ଛୋଟକାଟିଆ ବାବାଜୀ ହେଉନି, ଶହ ଶହ ହଜାର ହଜାର ଆପ୍ଲିକେଶନ ମଧ୍ୟରୁ ମୋର ବାବାଜୀଗତ ବାଓଡାଟାର ଦୃଢ଼ତା ଦେଖି ମୋତେ ହୃଷୀକେଶର ବାବା ସ୍ୱୟଂ ସଂପୂର୍ଣ୍ଣାନନ୍ଦ ସିଦ୍ଧପୁରୁଷ ସୁନିର୍ବାଚିତ କରିଛନ୍ତି । ଯଦିଓ ତୋର ପ୍ରିୟା ଭାଉଜଙ୍କ ପ୍ରତି ମନ ମୋର ଟିକିଏ ଗୋଳେଇଘାଣ୍ଟି ହେଉଛି, ତଥାପି ବାବା ସଂପୂର୍ଣ୍ଣାନନ୍ଦ ସିଦ୍ଧପୁରୁଷଙ୍କ ଖାସ୍ ଦସ୍ତଖତରେ ଆସିଥିବା ଏଇ ବାବାଜୀ ନିଯୁକ୍ତି ପତ୍ରକୁ ମୁଁ କିପରି ବା ପ୍ରତ୍ୟାଖ୍ୟାନ କରିବି ? ଏତେ ବଡ ଅଫରଟାକୁ ଥରେ ହାତଛଡା କଲେ ମୁଁ ଆଉ ଦ୍ୱିତୀୟଥର ପାଇଁ ବାବାଜୀ ହୋଇ ପାରିବି ତ ?''

ମୋ କଥା ସରିନି ଗାଡି ଆସି ପ୍ଲାଟଫର୍ମରେ ପହଞ୍ଚିଲା । ପ୍ରିୟା ପ୍ରତି ଉଦ୍ଦିଷ୍ଟ ଥିବା ଲଫାପାଟି ନକୁଳ ହାତକୁ ବଢ଼ାଇ ଦେଇ କହିଲି, ''ନକୁଳ, ଭାବିଥିଲି ଆର.ଏମ୍.ଏସ୍‌ରେ ଚିଠିଟା ପକାଇଦେବି । ତୁତ ଆସିଗଲୁ । ପ୍ରିୟା ଭାଉଜକୁ ଏ ଚିଠିଟା ଦେଇଦେବୁ ।''

ମୋର କଥାରୁ ନକୁଳ ଜାଣିପାରିଲା ଯେ ମୁଁ ହୃଷୀକେଶ ଯିବା ଚରମ ସତ୍ୟ । ତେଣୁ ସେ ମୋ ସହିତ ଆଉ କିଛି ଅଧିକ ଏଣୁତେଣୁ ନଗପି ସିଧା ପଚାରିଲା: କ'ଣ ଭାଉଜଙ୍କୁ କିଛି ଖବର ଦେବୁ ?''

ମୁଁ କହିଲି, ''ନାହିଁ, ସବୁ ଖବର ଚିଠିରେ ଲେଖା ହୋଇଛି । ପ୍ରିୟା ବୁଝିପାରିବ ।''

ଏହା କହି ମୁଁ ପୁରୁଷୋତ୍ତମ ଏକ୍ସପ୍ରେସ୍‌ରେ ମୋ ପାଇଁ ଉଦ୍ଦିଷ୍ଟ ଥିବା ବଗିରେ ବସି ପଡିଲି ।

ଗାଡି ଦିଲ୍ଲୀ ଅଭିମୁଖେ ଛାଡିବା ପୂର୍ବରୁ ମୋର ବାବାଜୀ ହେବାର ରୋମାଞ୍ଚକର କାହାଣୀ ସମ୍ବଳିତ ଚିଠି ଧରି ସିଧା ସିଧା ନକୁଳ ଫେରି ଆସିଲା ଆଇ.ଆର.ସି.ରେ ଥିବା ମୋର ଘରକୁ ।

ନିର୍ବାକ୍ ଭାବେ ବଢ଼ାଇ ଦେଲା ଚିଠିଟି ପ୍ରିୟା ହାତକୁ । ପ୍ରିୟା ପୃଷ୍ଠାପରେ ପୃଷ୍ଠା ମୋର ଚିଠିଟି ପଢ଼ିଚାଲିଲା । ଚିଠିଟିରେ ଲେଖାଥିଲା ମୋର ପ୍ରଥମ ପ୍ରଣୟିନୀ ଭାବେ ପ୍ରିୟା ସହିତ ମଧୁର ସମ୍ପର୍କ, ପରବର୍ତ୍ତୀ ଜଞ୍ଜାଳଗ୍ରସ୍ତ ତେଲଲୁଣ ଦୁନିଆଁ ମଧରେ ଘଟିଥିବା କେତେକ କଳି ଓ କଜିଆର ଘୃଣ୍ୟ ରୂପ ଓ ପୁଅବୋହୂ ପାଇ ସାରିବା ପରେ ତା' ମନରେ ଥିବା ମୋ ପ୍ରତି ବେଖାତିର ମନୋଭାବ ।

ଅବଶ୍ୟ ଏସବୁ ଥିଲା ନିକଟରେ ପାଇଥିବା ସରକାରୀ ଚାକିରୀରୁ ଅବସର ପ୍ରାପ୍ତ ମନର ମୋର ଏକ ମାନସିକ ପ୍ରହେଳିକା । ମନକୁ ଯେତେ ପ୍ରିୟା ସପକ୍ଷରେ ବୁଝାଇଲେ ମଧ ମନଟି ମୋର ବୁଝିନଥିଲା । ସବୁବେଳେ ମୁଁ ଚାହୁଥିଲି ପ୍ରିୟା ମୋର ସେମିତି ଷୋଡଶୀ ହୋଇଥାନ୍ତା । ତା'ର ପଣତକାନି ତଳେ ମୋତେ ସବୁଦିନପାଇଁ ଲୁଚାଇ ରଖନ୍ତା । ଆଉ କୁହନ୍ତା, ''ତୁମେ ସତେ କେତେ କଳା ! କେତେ ସୁନ୍ଦର !!''

ମୁଁ ଭୁଲି ଯାଇଥିଲି ସମୟର ଏକ ବିବର୍ତ୍ତନ ଅଛି । ଗତି ଅଛି । ଯେଉଁ ଗତିର ତାଳେ ତାଳେ ମୁଁ କିଶୋରରୁ ଯୁବକ ହୋଇଛି, ଯୁବକରୁ ବୃଦ୍ଧ ହୋଇଛି ଆଉ ପ୍ରିୟା ମଧ ସେଥିରୁ ବାଦ୍ ପଡିନି ।

ଆଉ ଦାନ୍ତ ନଥିବା ପାଟିରେ ଦାନ୍ତ ଲଗାଇଲେ ମଧ ଗଣ୍ଡଦେଶ ଦ୍ୱୟ ବାର୍ଦ୍ଧକ୍ୟର ଛାପରେ ସ୍ପଷ୍ଟ ବାରି ହୋଇଛି, ମୁଣ୍ଡରେ ଯେତେ କଳାଲଗାଇଲେ ମଧ କୋଶ ବିନ୍ୟାସର ଖଇରିଆ ରଙ୍ଗ ମଧ ସ୍ପଷ୍ଟ ବାରି ହୋଇପଡିଛି ।

ସେଦିନ ନାତି ଲିଟୁନ୍ ଠିକ୍ କହିଥିଲା, ''ଜେଜେ ତୁମେ ବଡ ଠକ ।''

ନାତିର ଏପରି କଥା ପ୍ରିୟାର ମନକୁ ପାଇ ନଥିଲା । ସେ ସଙ୍ଗେସଙ୍ଗେ କହିଥିଲା, '' ଲିଟୁନ୍, ଜେଜଙ୍କୁ ଠକ କ'ଣ କହନ୍ତି ?''

ଲିଟୁନ୍ ମୋ ଉପରେ ଆଉ ଆକ୍ରମଣ ନକରି ସଙ୍ଗେ ସଙ୍ଗେ କହିଥିଲା, ''ଜେଜ ମା, ତୁମେ ବି ଠକ ।''

ଲିଟୁନ୍‌ର କଥାକୁ ଆରଘରେ ତା'ର ମା ଶୁଣୁଥିଲେ । ସେ ସଙ୍ଗେ ସଙ୍ଗେ ଆସି କହିଥିଲେ, ''ଦେଖ୍, ଲିଟୁନ୍, ଆଉ ଦିନେ ଜେଜ କିମ୍ବା ଜେଜେମାଙ୍କୁ ତୁ ଯଦି ଠକ କହିବୁ....?''

ମା'ର କଥାରେ ଦବି ନଯାଇ ଲିଟୁନ୍ କହିଲା, ''ହଁ, ହଁ, ମୁଁ କହିବି ଜେଜେ ଠକ, ଜେଜେମା ଠକ, ଓ ସେମାନେ ଦୁହେଁ ଠକ ।''

ଲିଟୁନ୍ ଖରାପ ହୋଇ ଯାଇଛି ଭାବି ତା'ର ମା ଭୀଷଣ ରାଗି ଉଠିଲା । ମୋ ଉପସ୍ଥିତିରେ ନାତିକୁ ମାରିବା ଅଭଦ୍ରାମୀ ହେବ ବୋଲି ଭାବି ଶିକ୍ଷିତା ବୋହୂ ମୋର ନରମଗଳାରେ କହିଲା, ''ଜେଜେ ଓ ଜେଜେମା ତୋତେ କ'ଣ ଠକିଲେ ଯେ ସେମାନଙ୍କୁ ଏପରି କହୁଛୁ ?''

ଏକ ବଡ ମଣିଷ ଭଳି ଲିଟୁନ୍ କହିଲା, ''ସେମାନେ ଠକୁ ନାହାନ୍ତି ମା ! ସେମାନଙ୍କ ଧଳା ମୁଣ୍ଡବାଳକୁ ତ  କଳା କରୁଛନ୍ତି ।''

ଲୁଟୁନ୍‌ର କଥା ମଧ୍ୟରେ ଏକ ଚରମ ସତ୍ୟ ଅନ୍ତର୍ନିହିତ ଥିଲା । ଅଳ୍ପ ବୟସର ବୋହୂ ଆଗରେ ତାହା ଧରା ନପଡୁ ଭାବି ମୁଁ ଠୋ ଠୋ ହସି ହସି କହିଲି, '' ଓଃ ଏଇକଥା, ନାତି ମୋରଟି, ବୁଦ୍ଧି ନହୋଇଥିଲେ ସେ ଏତେ ସୁନ୍ଦର ଭାବେ ବୁଦ୍ଧିର କୌଶଳ ଦେଖାଇ ପାରିଥାନ୍ତା ?''

ମୋର ହସର ତାଳେ ତାଳେ ଏକ ଚରମ ସତ୍ୟ ଉପରେ ଆବରଣ ପଡିଗଲା । ଲିଟୁନ୍‌କୁ ତା'ର ମା  ଆରଘରକୁ ନେଇ ଚାଲିଗଲା । ହେଲେ ପ୍ରିୟା ମୋର ଲାଜେଇ ଯାଇ କହିଲା, ''ହେଇ ଦେଖୁନା, ପିଲାଟା କ'ଣ ନ କହିଲା ।''

ମୁଁ ପ୍ରିୟା କଥା ଉପରେ ଗୁରୁତ୍ୱ ନଦେଇ କହିଲି, ''କହିଲା ତ କହିଲା, ହେଲା କ'ଣ ?''

ପ୍ରିୟା କହିଲା, ''ହେଲା କ'ଣ ? ବୋହୂ ମୋର ମନରେ କ'ଣ ଭାବି ନଥିବ ?''

ମୁଁ କହିଲି, '' ଓଃ ଏଇଥିପାଇଁ ମନରେ ତୁମର ଭୟ, ଆଖିରେ ଏତେ ଲାଜ ! କାଳେ ବୋହୂଟି ଆଗରେ ଆମର ବାର୍ଦ୍ଧକ୍ୟ ବୟସର ରେମାନ୍ସ୍ ଧରାପଡିଯିବ ?''

ହଁ, ସେଇଥିପାଇଁ, ପ୍ରିୟା କହିଲା ।

ମୁଁ ଏକ ଦାର୍ଶନିକ ଭଳି ପ୍ରିୟାକୁ ଉତ୍ତର ଦେଲି, ''ପ୍ରିୟା, ରୋମାନ୍‌ସ କେବେ ଶାରୀରିକ ଅବସ୍ଥାକୁ ନେଇ ଅପେକ୍ଷା କରେ ନାହିଁ । ମୁଣ୍ଡବାଳ କଳା ହେଲେ ଏହାର ମୂଲ୍ୟ ଯେତିକି ଥାଏ ଧଳା ହେଲେ ମଧ୍ୟ ସେତିକି ଥାଏ ।

ଏହା କହି ସେଦିନ ମୁଁ ପ୍ରିୟାର ଗଣ୍ଡଦେଶରେ ଏକ ଚୁମା ଆଙ୍କି ଦେଇଥିଲି ।

ବାର୍ଦ୍ଧକ୍ୟ ନନ୍ଦିନୀ ପ୍ରିୟା ମୋର ଖୁବ୍ ଲାଜେଇ ଯାଇଥିଲା ।

ଏମିତି ଅନେକ କିଛି ଅତୀତର ଘଟଣାବଳୀ ମୋର ହୃଦୟକୁ ରୋମନ୍ଥନ କଲା । ସମସ୍ତ ଘଟଣାପୁଞ୍ଜ ଚଳଚ୍ଚିତ୍ରର ଦୃଶ୍ୟପଟ୍ଟ ପରି ମୋ ସମ୍ମୁଖରେ ନାଚିବାକୁ ଲାଗିଲା । ମୋର ମନେ ହେଲା ନକୁଳଠାରୁ ମୋର ବାବାଜୀ ହେବାର ଖବର ପାଇ ପ୍ରିୟା ମୋର କାନ୍ଦୁଛି । ପୁଅ ବୋହୂ ନାତି ଲିଟୁନ୍ ସମସ୍ତେ ବସି କାନ୍ଦୁଛନ୍ତି । ସମସ୍ତଙ୍କ ମୁହଁରୁ ଗୋଟିଏ କଥା ବାହାରୁଛି : ଆମେ ତାଙ୍କର ସେବାରେ କ'ଣ ଅବହେଳା କରିଥିଲୁ ଯେ ସେ ବାବାଜୀ ହୋଇ ପଳାଇଲେ ? କହିବୋଲି ବନ୍ଧୁ ବାନ୍ଧବଙ୍କୁ କ'ଣ ଜଣାଇ ଯାଇଥିଲେ ଭଲ ହୋଇନଥାନ୍ତା । ଲୋକେ ଆମକୁ କ'ଣ କହିବେ ? ଖାଲି ନିନ୍ଦା କରିବେ- କହିବେ ରିଟାୟାର୍ଡ ବୁଢ଼ାଟିର ହେପାଜତ୍ କେହି ନେଲେନି ବୋଲି ବୁଢ଼ା ଚୋରଙ୍କଭଳି ଲୁଚି ଘରୁ ହୃଷୀକେଶ ପଳାଇ ଯାଇଛି ।

ମୋର ଭାବନାକୁ ଭାଙ୍ଗି ଗାଡି ସିଟି ଦେଲା । ଗାର୍ଡ ସାୟେବଙ୍କ ହୁଇସିଲ୍ ବାଜି ଉଠିଲା । ମୁଁ ଆଉ ଥୟଧରି ପାରିଲି ନାହିଁ । ଟ୍ରେନ୍‌ଟି ଛୁକ୍ ଛୁକ୍ ହୋଇଗଡିବାକୁ ଲାଗିଛି କି ନାହିଁ ମୁଁ ସିଧା ଓହ୍ଲେଇ ପଡିଲି । ପ୍ରିୟା ଓ ପିଲାଛୁଆଙ୍କୁ ପ୍ରବୋଧନା ଦେବା ପାଇଁ ଆଇ.ଆର୍.ସି. ଭିଲେଜ୍‌ରେ ଥିବା ମୋର ଘର ଅଭିମୁଖେ ଶୀଘ୍ର ଚାଲିଲି ।

ଘରେ କ'ଣ ଘଟିଛି ଜାଣିବା ପାଇଁ ଡ୍ରଇଂରୁମ୍‌ର ଝରକା ପାଖରେ ଛପି ଠିଆ ହେଲି । ଲକ୍ଷ୍ୟକଲି ପ୍ରିୟା ସେମିତି ମୋର ଚିଠି ପଢ଼ି ଚାଲିଛି । ନକୁଳ ମନ ଦୁଃଖରେ ଭାଉଜଙ୍କ ମୁହଁକୁ ଚାହିଁ ରହିଚି । ମାତ୍ର ପ୍ରିୟା ମୁଖମଣ୍ଡଳରେ କୌଣସି ଭାବନା ନାହିଁ । ସତେ ଯେମିତି ତା'ର କିଛି ଘଟିନାହିଁ ।

ପ୍ରିୟାର ଆବଭାବରେ କୌଣସି ପରିବର୍ତ୍ତନ ନଦେଖି ନକୁଳ ପଚାରିଲା, ''ଭାଉଜ, ଭାଇ ବାବାଜୀ ହୋଇଗଲେ, ତୁମ ମନରେ ଦୁଃଖ ଲାଗୁନି ।''

ପ୍ରିୟା କହିଲା- ନା

ଏହି ସମୟରେ ଆର ଘରୁ ଶିକ୍ଷିତା ବୋହୂ ମୋର ବାହାରି ଆସି କହିଲା, "ବୋଉ କାହିଁକି ମନ ଦୁଃଖ କରିବେ, ବାପା ଯେମିତି ସରକାରୀ ଚାକିରୀରୁ ଅବସର ନେଲା ପରେ ଆମ ଉପରେ ଚିଡ଼ିଚିଡ଼ି ହେଉଥିଲେ, ସେଥିରୁ ବୋଉ ଓ ଆମେ ସମସ୍ତେ ଭଲଭାବରେ ଜାଣିଥିଲୁ ଯେ ଆମକୁ ଶାନ୍ତି ଦେବାପାଇଁ ବାପା ନିଶ୍ଚିତ ଭାବେ କୌଣସି ନା କୌଣସି ସ୍ଥାନକୁ ବାବାଜୀ ହୋଇଯିବେ । ବାପାତ ହୃଷୀକେଶ ଯାଇଛନ୍ତି । କେତେଜଣଙ୍କ ଭାଗ୍ୟରେ ପୁଣି ଜୁଟୁଛି ହୃଷୀକେଶରେ ବାବାଜୀ ହେବା ପାଇଁ ?"

ବୋହୂର କଥାରୁ ନାତି ଲିଟୁନ୍ ଏତିକି ବୁଝିଲା ଯେ ମୁଁ ଘରଛାଡ଼ି ଚାଲି ଯାଇଛି । ସେ ଥମଥମ ହୋଇ ପଚାରିଲା, "ମମି ମୋତେ କିଏ କାହାଣୀ କହିବ ? କିଏ ଜୁନି ପିଲାଙ୍କ ଗୀତ ଶୁଣେଇବ ?"

ଲିଟୁନ୍‌କୁ ପ୍ରବୋଧନା ଦେବାକୁ ଯାଇ ମା' ତାର କହିଲା, "ଲିଟୁନ୍ ତୁ ବ୍ୟସ୍ତ ହୁଅନା, ଜେଜେଙ୍କ କାହାଣୀ ଠାରୁ ଆଉ ସୁନ୍ଦର କାହାଣୀ ଅଛି, ଜେଜେ ଶିଖାଉଥିବା ନର୍ସେରୀ ରାଇମ୍‌ଠାରୁ ଆଉ ସୁନ୍ଦର ନର୍ସେରୀ ରାଇମ୍ ଅଛି ? ମୁଁ ତୋ ପାଇଁ ଏକ ସୁନ୍ଦର ମାମ୍ ରଖିଦେବି । ସେହିଁ ତୋତେ ଶିଖାଇ ଦେବେ ।"

ବୋହୂର କଥାରେ ମୋ ମନରେ ଅହେତୁକ ରାଗ ହେଲା । ମୁଁ କମଣ୍ଡଳୁଟାକୁ ଦୂରକୁ ଫିଙ୍ଗି ଦେଇ ଏକାଦମ୍‌ରେ ଘର ଭିତରକୁ ପଶିଗଲି ।

ମୋତେ ଦେଖି ସମସ୍ତେ ତଟସ୍ଥ ହୋଇଗଲେ । ମୁଁ କହିଲି "ବୋହୂ ମାମ୍ କେବେ ଜେଜେ ହୋଇ ପାରିବେ ନାହିଁ । ଗେଲବସରରେ କାହାଣୀ ଓ ନର୍ସରୀ ରାଇମ୍ ମଧ୍ୟରେ ଶିଶୁର ଚରିତ୍ର ଗଢୁଥିବା ଅଜା ଓ ଜେଜେଙ୍କ ଭୂମିକା କେବେ କୌଣସି ମାମ୍ (ମ୍ୟାଡାମ୍) କିମ୍ବା ସାର୍ ନେଇ ପାରିବେନି ।"

ମୋ କଥାକୁ ଶୁଣି ବୋହୂ କ୍ଷୀପ୍ର ଗତିରେ ଆର ଘରକୁ ଚାଲିଗଲା ।

ଅତି ସ୍ୱଭାବିକ ଭାବେ ପ୍ରିୟା ମୋତେ ପଚାରିଲା, "ତୁମେତ ହୃଷୀକେଶ ଯାତ୍ରା ପାଇଁ ଟ୍ରେନରେ ବସିଥିଲ । ନକୁଳ ଦେଖି ଆସି ସେଇକଥା କହୁଥିଲେ । କ'ଣ ଚୀନ ସହିତ ଯୁଦ୍ଧ କରିବାକୁ ଯାଉଥିବା କିଛି ଜଓ୍ୱାନ ଟ୍ରେନରୁ ଓହ୍ଲେଇ ଆସିଲା ଭଳି ତୁମେ ଟ୍ରେନ୍‌ରୁ ଓହ୍ଲେଇ ଆସିଲ ?"

ମୁଁ କହିଲି, "ପ୍ରିୟା, ତୁମ କଥା ଭାବି ମୋର ମନ ଆନ୍ଦୋଳିତ ହେଲା । ମୁଁ ଟ୍ରେନ୍‌ରୁ ଓହ୍ଲେଇ ଆସିଲି । କିନ୍ତୁ ଏଠି ଦେଖୁଚି ତୁମ ମନରେ ମୋ ପ୍ରତି ଟିକିଏ ହେଲେ ଦରଦ ନାହିଁ, ଦୁଃଖ ବି ନାହିଁ ।"

ଏକ ଆଘାତ ପ୍ରାପ୍ତ ବାଘୁଣୀ ଭଳି ପ୍ରିୟା ମୋରଚିଠି ଜନିତ କ୍ଷତକୁ ହୃଦୟରେ ଚାପି ରଖି କହିଚାଲିଲା, "ମନ କାହିଁକି ଦୁଃଖ କରିବି ? ତୁମେ ତୁମ ଜୀବନରେ

ସବୁ ପାଇଛ । ଯୌବନ ଓ ଜୀବଦ୍ଦଶାରେ ମୋର ସ୍ନେହ ଓ ସାହଚର୍ଯ୍ୟ, ପୁଅ ବୋହୂଙ୍କର ଭକ୍ତି ଓ ଆଦର, ବାସ୍, ସେତିକରେ ତ ମଣିଷର ଗାର୍ହସ୍ଥ୍ୟ ଜୀବନର ପରିପୂର୍ତ୍ତି । ତୁମେ ହୃଷୀକେଶ ଭଳି ପବିତ୍ର ସ୍ଥାନକୁ ବାବାଜୀ ହୋଇଯିବା କଥା ଶୁଣି ମୁଁ ଭାବୁଥିଲି ଯାହାହେଉ ସ୍ୱାମୀ ମୋର ବୈଦିକ ଯୁଗର ବାନପ୍ରସ୍ଥ ଧର୍ମ ଗ୍ରହଣ କରିଛନ୍ତି । ତା'ଠାରୁ ମୋ ଜୀବନରେ ମୋର ଆଉ କ'ଣ ଅଧିକ ଗୌରବର ବିଷୟ ଅଛି ?''

ପ୍ରିୟାର କଥାରେ ମଣିଷ ଜୀବନର ଚରମ ସତ୍ୟ ଥିଲା ନା' ମୋ ପ୍ରତି ଆକ୍ଷେପୋକ୍ତି ଥିଲା ତାହା ମୁଁ ବୁଝି ପାରିଲି ନାହିଁ । କିନ୍ତୁ ଗୋଟିଏ ସତ୍ୟ ଥିଲା ଯେ, ମୁଁ ହୃଷୀକେଶ ଯିବା ପଥରୁ ଓହରି ପୁଣି ମୋର ଗାର୍ହସ୍ଥ୍ୟ ଜୀବନ ମଧ୍ୟକୁ ଫେରି ଆସିଛି । ସତେ ଯେମିତି ସେ ଜୀବନରୁ ମୋର ଆଉ ମୁକ୍ତି ନାହିଁ ।

ତେଣୁ ମୁଁ ଆଉ ନିଜକୁ ଅଧିକ ଅପମାନିତ ପରିସ୍ଥିତି ମଧ୍ୟରେ ନ ରଖିବା ପାଇଁ କହିଲି, '' ପ୍ରିୟା ! ଏବେ ମୋର ଯାତ୍ରାପଥ ହୃଷୀକେଶ ନୁହେଁ । ତୁମରି ସ୍ନେହସିକ୍ତ ହୃଦୟ ହିଁ ମୋର ଯାତ୍ରାପଥ, ତାହାହିଁ ଜୀବନର ପବିତ୍ରତମ ତୀର୍ଥସ୍ଥାନ ।''

ମୋତେ ସାହାଯ୍ୟ କରିବାକୁ ଯାଇ ନକୁଳ କହିଲା, ''ଭାଉଜ ! ଭାଇ ଠିକ୍ କରିଛନ୍ତି । ତୁମରି ହୃଦୟ ହିଁ ତାଙ୍କର ତୀର୍ଥସ୍ଥାନ । ସେ ଆଉ ହୃଷୀକେଶ ଯିବେ କାହିଁକି ?''

ଏକ ପକ୍କା ଘରଣୀ ଭଳି ପ୍ରିୟା ଭାଉଜ କହିଲେ, ''ହଉ ହଉ, ଭାଇ ପ୍ରତି ଆଉ ସାର୍ଟିଫିକେଟ୍ ଦେବା ଦରକାର ନାହିଁ । ରାତି ବେଶୀ ହେଲାଣି । ଭାଇ କିଛି ଖାଇ ନଥିବେ । ତାଙ୍କ ବାବାଜୀ ହବା କଥା ଶୁଣି ତୁମର ମଧ ଭୋକ ମରି ଯାଇଥିବ । ଯାଅ, ମୁହଁ ହାତ ଧୋଇଆସ । ଘରେ ଯାହା କିଛି ଅଛି ସମସ୍ତେ ମିଶି ଖାଇନେବା ।''

ପ୍ରିୟାର ସାନ୍ତ୍ୱନାମୂଳକ ବାଣୀ ଶୁଣି ମୋ ଦେହରେ ଟିକିଏ ଜୀବନ ପଶିଗଲା ।

କହିଲି, ''ନକୁଳ, ଆଉ ଡେରି କାହିଁକି ? ହାତ ମୁହଁ ଧୋଇପକା ।''

ମୋ କଥା ଶୁଣି ନକୁଳ ହସିଲା ।

କହିଲା, ''ଭାଇ, ଏଣିକି ପୁଣି କେବେ ବାବାଜୀ ହୋବକୁ ଇଚ୍ଛା ହେଲେ, ଟିକିଏ ବୁଝିଶୁଝି ଆଗେଇବ ।''



# ବାପାଙ୍କ ବୋହୂ

**ସେ**ଦିନ ସକାଳୁ ସକାଳୁ ମନଟା କାହିଁକି ଗୋଳେଇଘାଣ୍ଟି ହେଲା । ଖାଲି ବାଲ୍ୟବନ୍ଧୁ କାଙ୍ଗାଳି କଥା ମୋର ମନେ ପଡିଲା । ମନକୁ ଯେତେ ବୁଝେଇଲେ ମଧ ମନ ମୋର ବୁଝିଲାନି । ସତେ ଯେମିତି କାଙ୍ଗାଳି ମୋତେ ଖୋଜୁଛି । ମୁଁ ଆଉ ଥୟଧରି ପାରିଲି ନାହିଁ । ଶୁଭ୍ରାକୁ କହିଲି, ''ଶୁଭ୍ରା, ଆରଘରୁ ମାରୁତି କାରର ଚାବିଟା ଆଣି ଦେଲ ?''

ଶୁଭ୍ରା ମୋ ଆଡକୁ ଚାହିଁ ପଚାରିଲା, ''ସକାଳୁ ନଖାଇ ନପିଇ କୁଆଡେ ଯିବ ? ଥରେ ଘରୁ ବାହାରିଲେ ତ ତୁମର ଆଉ ଫେରିବାର ଠିକଣା ନାହିଁ । ରାତି ବି ହୋଇଯାଇପାରେ । ଆଜି ତୁମ ପାଇଁ ଛତୁ ଆଣିଛି । ତରକାରୀ କରିବି । ଅତି କମ୍‌ରେ ତୁମର ପ୍ରିୟ ତରକାରୀ ଛତୁ ଟିକକ ଖାଇଗଲେ ମୋତେ ଭଲ ଲାଗିବ । ତେଣିକି ରବିବାରଟା ମୋ ପାଇଁ ପଛେ ନିଃସଙ୍ଗ ହୋଇଯାଉ ?''

ଶୁଭ୍ରାର ଅଭିମାନ ଦରଦୀଭରା କଥା ଶୁଣି ହସି ହସି କହିଲି, ''ଶୁଭ୍ରା ତୁମେତ ଜାଣ, ମୋର ଯେଉଁଦିନ ଡଃ ତ୍ରିପାଠୀଙ୍କ କଥା ଘନ ଘନ ମନେ ପଡିଥିଲା ଆଉ ମୁଁ ତୁମକୁ ସାଙ୍ଗରେ ନେଇ ସଙ୍ଗେ ସଙ୍ଗେ ତାଙ୍କ ଘରକୁ ଯାଇଥିଲି, ସେଦିନ ସେ କିପରି ଜ୍ୱରରେ ପ୍ରଳାପ କରୁଥିଲେ । ତାଙ୍କ ମୁଣ୍ଡରେ ମୁଁ ଯେତେବେଳେ ଟିକିଏ ମୋର ହାତକୁ ସଞ୍ଚାଳନ କଲି ସେ କିପରି ଖୁସି ହେଲେ ଓ ଜ୍ୱରକଥା ଭୁଲି ମୋ ସହିତ ଦୁଃଖ ସୁଖ ହେଲେ ।''

ମୋ ଠାରୁ ଏତକ ଶୁଣି ଶୁଭ୍ରା ପଚାରିଲା, ''କ'ଣ ଆଜି ତୁମର ପୁଣି ଡଃ ତ୍ରିପାଠୀଙ୍କ କଥା ମନେ ପଡୁଛି ?''

ମୁଁ ହସି ହସି କହିଲି, ''ନା, ମୋର ବାଲ୍ୟସାଥୀ କାଙ୍ଗାଳି କଥା ଖୁବ୍ ମନେ ପଡୁଛି । ରେଭେନ୍‌ସା କଲେଜ ଛାଡିବା ପରେ ତା' ସହିତ ଥରେ ସେକ୍ରେଟେରୀୟଟ୍‌ରେ ଦେଖା ହୋଇଥିଲା । ସେଦିନ ସେ କାର୍ଯ୍ୟବ୍ୟସ୍ତ ଥିଲା ଓ ମୁଁ

ମଧ୍ୟ । ଆମ ଭିତରେ କୌଣସି କଥାବାର୍ତ୍ତା ହୋଇ ପାରିଲା ନାହିଁ । ଏବେ ସେ ଖୋର୍ଦ୍ଧାରେ ଅବସ୍ଥାପିତ ହୋଇଛି ।ତା'ପରେ ମୁଁ ଖୋର୍ଦ୍ଧା ଯାଇଁ ଟିକିଏ ତା'ସହିତ କଥାବାର୍ତ୍ତା ହୋଇ ତିନିଚାରି ଘଣ୍ଟା ମଧ୍ୟରେ ଫେରି ଆସିବି । ଲଞ୍ଚ୍ ସମୟରେ ନିଶ୍ଚିତ ଭାବେ ତୁମ ସହିତ ଯୋଗଦେବି ।''

ଲଞ୍ଚ୍‌ରେ ଯୋଗ ଦେବା କଥା ଶୁଣି ଶୁଭ୍ରା ବହୁତ ଖୁସି ହେଲା । କହିଲା, ''ଯାହାହେଉ, ଆଜି ମୋର ଭାଗ୍ୟ, ମୁଁ ଭାବୁଥିଲି ସବୁ ରବିବାର ପରି ବୋଧହୁଏ ତୁମେ ଆଜି କାର୍ଯ୍ୟବ୍ୟସ୍ତତା ଭିତରେ ବାହାରକୁ ଚାଲିଯିବ ।''

'ନା, ନା' ଆଜି ସେମିତି ହେବନି ।' ମୁଁ କହିଲି ।

ଶୁଭ୍ରା ମାରୁତିର ଚାବି ଆଣି ଦେଲା । ମୁଁ ଶୀଘ୍ର ଖୋର୍ଦ୍ଧା ଅଭିମୁଖେ ବାହାରି ପଡିଲି ।

ଗାଡି ଚଳାଇ ୪୫ ମିନିଟ୍ ମଧ୍ୟରେ ଖୋର୍ଦ୍ଧାସ୍ଥିତ କାଙ୍ଗାଳିର ବାସଭବନରେ ପହଞ୍ଚିଲି । ଦେଖିଲି ଏତେବଡ ବଙ୍ଗଳା ଖାଲି ଖାଲି ଲାଗୁଚି । ଯେମିତି ଖାଁ-ଖାଁ କରି ମୋ ଆଡକୁ ଗୋଡେଇ ଆସୁଛି ।

ବଙ୍ଗଳାର ଗେଟ୍ ଖୋଲିଲି । ଗେଟ୍‌ର ଖୋଲା ଶବ୍ଦଶୁଣି ଘର ଭିତରେ ଥିବା ଅର୍ଡଲି ଜଣକ ବାହାରି ଆସିଲା । ମୋ ଆଡକୁ ଚାହିଁଲା । ସତେ ଯେମିତି ମୋତେ କ'ଣ ପଚାରିବ ବୋଲି ସ୍ଥିର କରୁଛି । ମୁଁ ତାକୁ ଅଧିକ ଭାବିବାକୁ ସୁଯୋଗ ନଦେଇ ପଚାରିଲି, ''ସାହେବ ଅଛନ୍ତି ?''

କହିଲା, ହଁ ।

- ଦେଖା ମିଳିବ ?

- ନା ।

- କାହିଁକି ? କ'ଣ ମେମ୍ ସାହେବଙ୍କ ସହିତ ବସି କଥାବାର୍ତ୍ତା ହେଉଛନ୍ତି ?

-ମେମ୍ ସାହେବ ଏଠାରେ ରହନ୍ତି ନାହିଁ, ମୁହଁ ଶୁଖାଇ ଅର୍ଡଲି ଜଣକ କହିଲା ।

- ତେବେ ବାବୁଙ୍କ ସହିତ କାହିଁକି ଦେଖା କରିହେବ ନାହିଁ ?

-ବାବୁ ରବିବାର ଦିନ କାହାରିକୁ ଦେଖାକରନ୍ତି ନାହିଁ ।

ଅର୍ଡଲିଠାରୁ ଏପରି କଥାଶୁଣି ମୋ ମନରେ ଟିକିଏ ବିରକ୍ତି ଭାବ ଆସିଲା । ବିରକ୍ତିରେ ପାଟିରୁ ବାହାରି ଆସୁଥିଲା 'ବାବୁ କେଉଁ ନାଟ ସାହେବ ହୋଇଛନ୍ତି ଯେ ଦେଖା ମିଳିବ ନାହିଁ ?'' ମାତ୍ର ଅର୍ଡଲି ଆଗରେ ଏପରି କଥା କାଙ୍ଗାଳି ପ୍ରତି ଅମର୍ଯ୍ୟାଦା ହେବ ଭାବି କହିଲି, ''ଯାଆ, ବାବୁଙ୍କ କହିବୁ ତାଙ୍କର ଶୁଭେନ୍ଦୁ ବାଲ୍ୟବନ୍ଧୁ ଦେଖା କରିବାକୁ ଆସିଛନ୍ତି ?''

ଅର୍ଦ୍ଦଳି ଜଣକ ଭିତରକୁ ଚାଲିଗଲା ।

ତା'ଠାରୁ ମୋ ଆସିବା ଖବର ଶୁଣି କାଙ୍ଗାଳି ସଙ୍ଗେ ସଙ୍ଗେ ବାହାରକୁ ଚାଲି ଆସିଲା । ମୋତେ ତାର ବାହୁବେଷ୍ଟନୀ ମଧ୍ୟରେ କୁଣ୍ଢେଇ ଧରିଲା । ମୁଁ ମଧ୍ୟ ତାକୁ ।

ସେଦିନ ଆମେ ଦୁହିଁଙ୍କରଐକାନ୍ତିକ ଆଲିଙ୍ଗନରୁ ମୁଁ ବନ୍ଧୁତ୍ୱର ନୈସର୍ଗିକ ସୁଖ ଅନୁଭବ କଲି । ସେ ଭଗବାନ କୃଷ୍ଣ ନଥିଲା କି ମୁଁ ସୁଦାମା ନଥିଲି । ତଥାପି ମୋର ମନେହେଲା ମର୍ତ୍ତ୍ୟରେ ବନ୍ଧୁତ୍ୱର ବିଚାରାଧାରାରେ ଆମେ ଦୁହେଁ ଖୁବ୍ ଉର୍ଦ୍ଧ୍ୱରେ ଥିଲୁ ।

ମୁଁ କାଙ୍ଗାଳିର ମୁହଁକୁ ଚାହିଁଲି । ନିଷ୍ପ୍ରଭ ପଡି ଯାଇଛି । ଦେହର ପଞ୍ଜରା ହାଡ ଗୁଡିକ  ଗଣି ହୋଇଯାଉଛି । ଦେହର ଦୀପ୍ତି ଓ ଯୌବନ ହଜିଯାଇଛି । ସତେ ଯେମିତି ସମୟର ରଥଚକ୍ରତଳେ ମୋର ବାଲ୍ୟସାଥୀ କାଙ୍ଗାଳି ଆଜି କାଙ୍ଗାଳ ହୋଇ ଯାଇଛି ।

ମୋ ମନରେ ଭାବାନ୍ତର ଦେଖି କାଙ୍ଗାଳି କହିଲା, ''କହ । ମୋ କଥା ତୋର କେମିତି ମନେ ପଡିଲା ?''

ମୁଁ କହିଲି, ''ସକାଳୁ ସକାଳୁ ମନଟା କେମିତି ମୋର ଗୋଳେଇ ଗାଣ୍ଠି ହେଲା । ଖାଲି ତୋ କଥା ମନେ ପଡିଲା । ଚାଲି ଆସିଲି ।''

ବେଶ୍ ଭଲ କଲୁ, କାଙ୍ଗାଳି କହିଲା । ପୁଣି ଆରମ୍ଭ କଲା, ''ମୋର ମଧ୍ୟ ଆଜି ଖାଲି ତୋ କଥା ମନେ ପଡୁଥିଲା । ଯାହାହେଉ ଟେଲିପାଥି ଠିକ୍ କାମକରିଛି । ଆଜି ଦୁଇବନ୍ଧୁ ବସି ଦୁଇପଦ ଦୁଃଖସୁଖ ହୋଇ ପାରିବା ।''

ଏତକ କହି କାଙ୍ଗାଳି ତା'ର ଅର୍ଦ୍ଦଳିକୁ ବଡ ପାଟିରେ ଡାକିଲା । ଅର୍ଦ୍ଦଳି ଗୋବିନ୍ଦା ପାଖକୁ ଆସିଲା । କାଙ୍ଗାଳି କହିଲା, ହଇରେ, ବାବୁଙ୍କୁ ନମସ୍କାର କରିଛୁ । ସିଏ କିଏଜାଣୁ ? କେତେଥର ତୋତେ କହିଛି ଲୋକ ଦେଖି ଚାହିଁ କଥାବାର୍ତ୍ତା କରିବୁ । ବାହାରର ଲୋକମାନଙ୍କ ପାଇଁ ସିନା ରବିବାରରେ ମୋ ଦେଖା ଦେବା ମନା, ହେଲେ ମୋର ବାଲ୍ୟବନ୍ଧୁ ?''

ମୋତେ ନମସ୍କାର ପକାଇ ଜଣେ ଅପରାଧି ଭଳି ଠିଆ ହେଲା ଗୋବିନ୍ଦା ।

ମୁଁ ହସି ହସି କହିଲି, ''ଆରେ, ତୁ ବ୍ୟସ୍ତ ହେଉଛୁ କାହିଁକି ? ଗୋବିନ୍ଦା ଯଦି ତଥାକଥିତ ବିଲାତ ଶିଷ୍ଟାଚାର ଜାଣିଥାନ୍ତା, ତେବେ ସିଏ ତୋଭଳି କିମ୍ବା ମୋଭଳି ହୋଇଥାନ୍ତା । କ'ଣ ତାକୁ କହିବାର ଅଛି କହ, ସିଏ ଠିଆ ହେଲା ଯେ ?''

ଶୁଖିଲା ମୁହଁରେ ଟିକିଏ ହସି ଫିଟାଇ କାଙ୍ଗାଳି କହିଲା, ''କହିବି ଆଉ କ'ଣ ? ଇଷ୍ଟ ହଷ୍ଟେଲରେ ଥିଲାବେଳେ ତୋର ମୋର କେତେଥର ରାଣୀହାଟର ସେହି ପଞ୍ଜାବୀ ହୋଟେଲରେ ଏକାଠି ବସି ଚିକେନ୍ ତରକାରୀ ଖାଇଛେ । ଆଉ ଚିକେନ୍ କରୀ ପାଇଁ

ତୁ ତ ଭାରି ବ୍ୟସ୍ତ । ଅତୀତର ସେହି ସ୍ମୃତି ଓ ତୋର ସସମ୍ମାନ ସମ୍ବର୍ଦ୍ଧନା ଉପଲକ୍ଷେ ଆଜି ଚିକେନ୍ କରୀ ହେବ ।''

ମୁଁ କହିଲି, ''ଥାଉ, ମୁଁ ଆଉଦିନେ ଆସିବି । ଶୁଭ୍ରାଙ୍କୁ କଥା ଦେଇ ଆସିଛି ଭୁବନେଶ୍ୱର ଫେରି ଯିବି । ଆସିଲାବେଳେ ସେ କହୁଥିଲା ମୋ ପାଇଁ ଛତୁ ତରକାରୀ କରିଛି । ଏବେ ଚିକେନ୍ ସ୍ଥାନରେ ଛତୁ ତରକାରୀ ମୋର ପ୍ରିୟ ହୋଇଛି ।''

କାଙ୍ଗାଳି ଟିକିଏ ଅଭିମାନ ଭରା ସ୍ୱରରେ କହିଲା, ''ତୁ ଯାଇଁ ରାତିରେ ଛତୁ ତରକାରୀ ଖାଇପାରିବୁ । ଶୁଭ୍ରା ନିଶ୍ଚିତ ତୋ ପାଇଁ ରଖିଥିବେ । ସେ ଛତୁ ତରକାରୀରେ ପିମ୍ପି ବସିଯିବ ନାହିଁ । ମୁଁ ମଧ ଏଠାରେ ତୋ ପାଇଁ ଛତୁ ତରକାରୀ ତିଆରି କରିବାର ବ୍ୟବସ୍ଥା କରି ପାରନ୍ତି । କିନ୍ତୁ ମୋ ଘରକୁ ଆସୁ ଆସୁ ହୁଏତ ସେ ଛତୁରେ ଫିମ୍ପି ଲାଗି ନଯିବ ବୋଲି କିଏ କହିବ ?

କାଙ୍ଗାଳିର କଥାରୁ ମୁଁ ତା' ମନର ଦୁଃଖ ବେଶ୍ ଭଲ ଭାବରେ ବୁଝି ପାରିଲି । ସଙ୍ଗେ ସଙ୍ଗେ କହିଲି, ନା, ମୁଁ ଆଉ ଭୁବନେଶ୍ୱର ଫେରି ଯିବି ନାହିଁ । ଦୀର୍ଘ ବ୍ୟବଧାନ ପରେ ଦୁଇ ବନ୍ଧୁଙ୍କର ଦେଖାସାକ୍ଷାତ ହୋଇଛି । ଆମେ ଦୁହେଁ ବସି ଏକାଠି ମଧ୍ୟାହ୍ନ ଭୋଜନ କରିବା ।

ମୋ ଠାରୁ ସମ୍ମତି ପାଇ କାଙ୍ଗାଳି ଗୋବିନ୍ଦା ହାତକୁ ପରିବା ପତ୍ର ଓ ଚିକେନ୍ ଆଣିବା ପାଇଁ କିଛି ଟଙ୍କା ଦେଲା ।

ଗୋବିନ୍ଦା ବଜାରକୁ ଗଲା । ଆମେ ଦୁହେଁ କାଙ୍ଗାଳି ରହୁଥିବା ବେଡ଼୍ରୁମ୍କୁ ଗଲୁ । ମୋ ହାତକୁ ଏକ ସଫ୍ଟ ଡ୍ରିଙ୍କ ବଢ଼ାଇ ଦେଇ କାଙ୍ଗାଳି ନିଜେ ପିଇଲା । ଏହି କୋକାକୋଲା ହିଁ ଆମ ଦୁହିଁଙ୍କ ମଧରେ ବାର୍ତ୍ତାଳାପର ଏକ ଆଦ୍ୟକଥନ ପରି କାମ କଲା ।

ମୁଁ ପଚାରିଲି, ''କାଙ୍ଗାଳି, ତୋ ପାଖରେ କ'ଣ ତୋ ପିଲାପିଲି ରହୁ ନାହାନ୍ତି ।

ନା, କାଙ୍ଗାଳି ଅତି ସ୍ୱାଭାବିକ ଭାବେ କହିଲା ।

ମୁଁ ଭାବିଥିଲି ହୁଏତ କିଛି ଅସ୍ୱାଭାବିକ ଘଟଣା ଘଟିଥିବ । କିନ୍ତୁ କାଙ୍ଗାଳି ମୁହଁରୁ ସ୍ୱାଭାବିକ ଉତ୍ତର ଶୁଣି ମୁଁ ମନେ ମନେ ଟିକିଏ ଆଶ୍ୱସ୍ତ ହେଲି । ପଚାରିଲି, 'କେଉଁଠି ରହିଛନ୍ତି ?'

ଉତ୍ତର ମିଳିଲା, 'ରାଉରକେଲାରେ ।''

କାହିଁକି ? ମୁଁ ପଚାରିଲି ।

ସେକଥା ସେମାନଙ୍କୁ ଜଣା, କାଙ୍ଗାଳି ଉତ୍ତର ଦେଲା ।

ମୁଁ ପୁଣି ପଚାରିଲି, ‘‘କେତେ ଦିନ ହେଲା ?’’

କାଙ୍ଗାଳି କହିଲା, ‘‘କେତେ ଦିନ କ’ଣ ପଚାରୁଛୁ ? ବରଂ ପଚାରେ କେତେ ବର୍ଷ ହେଲା ?’’

କାଙ୍ଗାଳିର କଥା ଗୁଡିକ ମୋତେ ଖାପଛଡା ଲାଗିଲା । ମୁଁ କହିଲି ‘‘ହଉ ହେଲା, କହ, କେତେ ବର୍ଷ ହେଲା ?

ଦୀର୍ଘ ବାରବର୍ଷ ହେଲା ।

କାଙ୍ଗାଳିର ଉତ୍ତର ଶୁଣି ମୋର ମୁଖମଣ୍ଡଳ ଟିକିଏ ଗମ୍ଭୀର ହୋଇ ଆସିଲା । ମୁଁ ମୋ ଆଡୁ ଆଉ ଅଧିକ କିଛି ପଚାରି ରବିବାର ପରି ଆନନ୍ଦଦାୟକ ଛୁଟିକୁ ନଷ୍ଟ କରିବାକୁ ଚାହିଁଲି ନାହିଁ ।

ମୋତେ ନୀରବ ରହିବାର ଦେଖି କାଙ୍ଗାଳି ପଚାରିଲା, ‘‘କ’ଣ ଆଉ ଅଧିକ ପଚାରି ତୋର ଅପାସୋରା ବନ୍ଧୁଟିର ମନକୁ ଖରାପ କରିବାକୁ ଚାହିଲୁ ନାହିଁ । ତେବେ ଶୁଣ ମୁଁ କହୁଚି-

ମୋର ଅନିଚ୍ଛା ସତ୍ୱେ ବାପାମା ମୋ ବିବାହ ଏକ ପ୍ରଥମ ପିଢ଼ୀର ତଥାକଥିତ ସମ୍ଭ୍ରାନ୍ତ ପରିବାରରେ କରିଦେଲେ । ବିବାହ ପୂର୍ବରୁ ଯେତେବେଳେ ମୋର ଇଚ୍ଛା ନନେଇ ବିଭାଘର ସ୍ଥିର କରାଯିବା ଅନ୍ୟାୟ ବୋଲି କହି ମୁଁ ପ୍ରତିବାଦ କଲି ସେତେବେଳେ ବାବା ଅତି ରୁକ୍ଷ ଭାବରେ କହିଲେ, ‘‘ମୋ ବୋହୂ କିଏ ହେବ ମୁଁ ଜାଣେ । ମୋ ବୋହୂକୁ ମୁଁ ଘରକୁ ଆଣିବି, ତୋତେ କେବଳ ବେଦୀ ଉପରେ ବସିବାକୁ ପଡିବ । ସେଥିରେ ମୋ ଇଚ୍ଛା ବିରୋଧରେ ପ୍ରଶ୍ନ ଉଠାଇବାକୁ ପୁଣି ତୁ କିଏ ?’’

ବାପାଙ୍କର ରୁକ୍ଷ ଓ କଠୋର ନିଷ୍ପତ୍ତି ବିରୋଧରେ ଯିବା ପାଇଁ ମୋର ଶକ୍ତି ନଥିଲା । ଭାରତୀୟ ସଂସ୍କୃତି ଓ ପରମ୍ପରାର ଏକ ମୂର୍ତ୍ତିମନ୍ତ ପ୍ରତୀକ ରୂପେ ମୁଁ ତାଙ୍କୁ ପିଲାଟିବେଳୁ ପୂଜା କରି ଆସୁଥିଲି । ବାପାଙ୍କ କଥା ମୋତେ ଖରାପ ଲାଗିଥିଲେ ମଧ୍ୟ ଗୋଟିଏ କଥା ମୋତେ ତାଙ୍କର ମୋତେ ଭଲ ଲାଗୁଥିଲା । ‘‘ମୋ ବୋହୂକୁ ମୁଁ ଆଣିବି, ତା’ ଉପରେ ପ୍ରଶ୍ନ ଉଠାଇବାକୁ ତୁ କିଏ ?’’

ବାପାଙ୍କର ବୋହୂ ନିର୍ବାଚନ ଓ ବୋହୂପ୍ରତି ଶ୍ରଦ୍ଧା ଦେଖି ମୋ ମନରେ ଯାହା ମାନ ଓ ଅଭିମାନ ଥିଲା, ତାହା କ୍ଷଣିକରେ ମିଳେଇଗଲା । ବାପାଙ୍କର ନିର୍ବାଚିତ ବଧୂ ଯେ ମୋର ଉପଯୁକ୍ତ ଜୀବନ ସାଥୀ ହୋଇପାରିବ ତାହା ମୁଁ ମନେ ମନେ ଧରି ନେଇଥିଲି ।

ଯଥା ସମୟରେ ମୋର ବିବାହ କାର୍ଯ୍ୟ ସରିଲା ଓ ବାପାଙ୍କ ବୋହୂ ଆସି ବାପାଙ୍କ ଘରେ ପହଞ୍ଚିଲା ।

ବୋହୂ ଆସିବା ଦିନ ବାପାଙ୍କ ମନରେ କି ଅସରନ୍ତି ଆନନ୍ଦ ! ହସି ହସି ବୁଲି ବୁଲି ଚତୁର୍ଥୀ ଭୋଜି ଦିନ ଚାରିଆଡ଼େ ତାଙ୍କର ଅନ୍ତରଙ୍ଗ ବନ୍ଧୁମାନଙ୍କ କହି ବୁଲିଲେ, ''ମୋର ସମୁଦି ଏମିତି ସେମିତି ଲୋକ ନୁହଁନ୍ତି । ସେ ଜଣେ ରିଟାଆର୍ଡ଼ ପୁଲିସ ଅଫିସର୍ । ଚାକିରୀ ନଥିଲେ ମଧ୍ୟ ଏବେ ବି ଲୋକେ ତାଙ୍କୁ ଡରୁଛନ୍ତି । ତାଙ୍କ ନାମ ଶୁଣିଲେ ଦଶଖଣ୍ଡ ମୌଜାର ଲୋକ ଡରୁଛନ୍ତି ।''

ଅଳ୍ପ କିଛି ଦିନ ହେଲା ପ୍ରାଥମିକ ଶିକ୍ଷକ ପଦରୁ ଅବସର ନେଇଥିବା ବାପାଙ୍କର ଏପରି ମନ୍ତବ୍ୟ ବାଲ୍ୟ ଚପଳତା ଥିଲା କି ନାହିଁ ତାହା ମୁଁ ଜାଣେନା, ମାତ୍ର କୌଣସି କାରଣରୁ ମୋତେ ବାପାଙ୍କ କଥା ଆଦୌ ଭଲ ଲାଗୁ ନଥିଲା । ତଥାପି ମୁଁ ମନେ ମନେ ଭାବୁଥିଲି, 'ଯାହା ହେଉ, ବଡ଼ଘରେ ବନ୍ଧୁବାନ୍ଧିଛନ୍ତି ବୋଲି ବାପା ମୋର ବେଶ୍ ଖୁସି ।''

ସେଦିନ ଚତୁର୍ଥୀ ରାତ୍ରିରେ ବାପାଙ୍କର ଶିକ୍ଷିତା ବୋହୂ ମୋତେ ପଚାରିଲା, ''ମୁଁ ଶୁଣୁଥିଲି ତୁମେ ଭାରତ ସରକାରଙ୍କଠାରୁ ଲୋନ ନେଇ ପାଠ ପଢୁଥିଲ ?

ମୁଁ କହିଲି, 'ହଁ'

ସେ ନୀରବ ରହିଲା ।

ମୁଁ ପୁଣି ପଚାରିଲି-କାହିଁକି କ'ଣ ହେଲା ?

ସେ କହିଲା ,'ନା ସେମିତି କିଛି ନୁହେଁ । ତଥାପି... ?''

ମୁଁ ଶ୍ରଦ୍ଧାର ସହିତ ତା'ର କେଶ ବିନ୍ୟାସରେ ହସ୍ତ ସଂଚାଳନ କରୁ କରୁ କହିଲି,''ତଥାପି ପୁଣି କ'ଣ ?''

ସଙ୍ଗେ ସଙ୍ଗେ ସେ କହିଲା,''ଥାଉ ସେ କଥା । ଥାଉ ଦିନେ ।''

ମୁଁ ମଧ୍ୟ ଆଉ ତା' କଥା ଉପରେ ଗୁରୁତ୍ୱ ଦେଲି ନାହିଁ ।

ସେଦିନ ରାତିରେ ଆମେ ଦୁହେଁ ଏକାକାର ହୋଇଗଲୁ । ବାପାଙ୍କ ବୋହୂ ସବୁଦିନ ପାଇଁ ମୋର କୁଳବଧୂ ହୋଇଗଲା ।

କାଙ୍ଗାଳି ପୁଣି କହି ଚାଲିଲା,''ପ୍ରଥମ କେତେଦିନ ଖୁବ୍ ଜଗିରଖି ତନୟା ଚଳିଲା । ଘରର ସବୁଲୋକ ବେଶ୍ ଖୁସି । ମୁଁ ମଧ୍ୟ ଖୁସି । ଖାଲି ମନେ ମନେ ଭାବୁଥାଏ ଯାହା ହେଉ ସବୁ ପିଲାଙ୍କ ପାଇଁ ବାପାଙ୍କ ଉପରେ ବୋହୂ ନିର୍ବାଚନ କରିବା ଭାର ତ କେଉଁ ଯୁଗରୁ ଚଳି ଆସିଛି । ପୁଣି ଆମ ଦେଶରେ ଏକ ସ୍ୱତନ୍ତ୍ର ମ୍ୟାରେଜ ଆକ୍ଟର ଆବଶ୍ୟକତା କ'ଣ ପାଇଁ ରହିଲା ? କ'ଣ ପ୍ରାଥମିକ ସ୍ତରରେ ବାପା ମା'ଙ୍କ ମନୋନୀତ ବୋହୂକୁ ଗ୍ରହଣ ନକରୁଥିବା ଲୋକଙ୍କ ପାଇଁ ?''

ସେଦିନ ହୋଇଥାଏ କୁମାର ପୂର୍ଣ୍ଣିମା । ରାତିରେ ତନୟା ମୋତେ କହିଲା, 'ତୁମେ ଚାକିରୀ ଜାଗାକୁ ମୋତେ ନେଇଗଲେ କେମିତି ହେବ ?''

ମୁଁ କହିଲି,''ବେଶ୍, ଭଲ ହେବ ?''

''ତେବେ ଶୀଘ୍ର ନଉନା କାହିଁକି ?''

ମୁଁ କହିଲି, ''ବାପା ବୋଉଙ୍କର ଗୋଟିଏ ମାତ୍ର ପୁଅ ମୁଁ । ଘରେ ଅବିବାହିତା ଭଉଣୀଟିଏ ଅଛି । ପୁଣି ନୂଆ ବୋହୂ ତମେ । ସଙ୍ଗେ ସଙ୍ଗେ ଚାକିରୀ ସ୍ଥାନକୁ ନେଇଗଲେ ଗାଁ ଲୋକେ ଆମକୁ କ'ଣ କହିବେ ? ମୁଁ ଚାହୁଁଛି ଅତ୍ୟନ୍ତ ପକ୍ଷେ ମାନସୀର ବିଭାଘର ସରିଯାଉ । ତୁମକୁ ଓ ବାପା ବୋଉଂକୁ ସାଥୀରେ ନେଇ ମୁଁ ଚାକିରୀ ସ୍ଥାନକୁ ଚାଲିଯିବି ।''

ଜଳୁଥିବା ନିଆଁ ଉପରେ ଘିଅ ଛିଞ୍ଚିଲେ ଯେମିତି ଜଳି ଉଠେ, ଠିକ୍ ସେମିତି ଜ୍ୱଳନ ଓ ରାଗ ନେଇ ତନୟା ମୋତେ କହିଲା, ଆଜି ମୋର ଧାରଣା ସତ୍ୟ ପ୍ରମାଣିତ ହେଲା ।

ମୁଁ ପଚାରିଲି,''କି ଧାରଣା ?'

'ତୁମେ ଲୋନ୍ ନେଇ ପାଠ ପଢୁଥିବା କଥା ।''

ମୁଁ ଟିକିଏ ନମ୍ର ହୋଇ ପଚାରିଲି,''ଏସବୁଥିରେ ଲୋନ୍‌ର କ'ଣ ସଂପର୍କ ଅଛି ?''

ତନୟା ବଡ଼ ପାଟିରେ କହି ଚାଲିଲା,''ଲୋନ୍ ନେଇ ପାଠ ପଢ଼ିଥିବା ଲୋକର ମନ ହେଉଛି ଏକ କରଜଗ୍ରସ୍ତ ମନ । ଆଉ କରଜ ଗ୍ରସ୍ତ ମନ ଜୀବନ କ'ଣ ଜାଣିବ, ଯୌବନର କ୍ଷୁଧା ଓ ଅଭୀପ୍‌ସାକୁ ପୁଣି ବୁଝିବ କିପରି ?''

ଏଥରକୁ ମୁଁ ଠିକ୍ ଠିକ୍ ବାପାଙ୍କର ବୋହୂକୁ ବୁଝିପାରିଲି । କହିଲି,''ତନୟା, ଲୋନ୍ ନେଇ ପାଠ ପଢ଼ିଥିବା ଲୋକର ମନ ଯେ ଏକ ଦେବାଳିଆ କରଜଗ୍ରସ୍ତ ମନ ତାହା ମୋର ଧାରଣା ବାହାରେ ଥିଲା । ଅନ୍ୟମାନେ ଶୁଣିବେ । ପ୍ରଥମ କୁମାର ପୂର୍ଣ୍ଣିମାର ଭାର ଖାଇ ପାଟି ମିଠା କରିଥିବା ବାପା, ବୋଉ ଓ ମାନସୀ କାନରେ ଯଦି ତୁମ କଥା ପଡ଼ିବ, ତେବେ ସେମାନେ କ'ଣ କହିବେ । ମୁଁ କଥା ଦେଉଛି । ଆର ଥରକୁ ଭଡ଼ା ଘରଟିଏ ଠିକ୍ କଲେ ତୁମକୁ ସାଥୀରେ ନେଇଯିବି ।

ଯାହା ହେଉ ସେଦିନ ମୋ ଅନୁନୟ ଓ ବିନୟକୁ ଆଖି ଆଗରେ ରଖି ତନୟା ନୀରବ ରହିଲା । ମୁଁ ରାତିରେ ଟିକିଏ ଆଶ୍ୱସ୍ତିରେ ଶୋଇଗଲି ।

ପରଦିନ ସକାଳୁ ସକାଳୁ ମନଟା କେମିତି କେମିତି ଭାରାକ୍ରାନ୍ତ ଲାଗିଲା । ଭାବିଥିଲି ବାପାଙ୍କ ଦ୍ୱାରା ମନୋନୀତ ବୋହୂ ବାପାଙ୍କ ହେପାଜତ ନେବ । ମୁଁ ଚାକିରୀ ସ୍ଥାନକୁ ନେବାକୁ କହିଲେ ମଧ୍ୟ ସେ ମୋତେ କହିବ, ''ଗାଁରେ ବାପାବୋଉ ଓ

ଅଭିଆଡ଼ି ନଣନ୍ଦକୁ ଛାଡ଼ି ତୁମେ ମୋତେ କେମିତି ସାଙ୍ଗରେ ନେବ ବୋଲି କହୁଚ ? ସେ ବାପା ବୋଉ ତୁମର ତ ?'' ମାତ୍ର ତନୟା ସେତକ କଲାନାହିଁ, ବରଂ ମୋତେ କହିଲା, ''ଋଣ ନେଇ ପାଠ ପଢ଼ିଥିବା ଲୋକର ମନ ବିକାରଗ୍ରସ୍ତ ହୋଇଥାଏ । ତା'ଠାରୁ ପୁଣି ମୌଳିକ ଚିନ୍ତାଧାରା କ'ଣ ଆଶା କରାଯାଏ ?''

ତନୟା ଓ ମୋ ମଧ୍ୟରେ ଯେ ମନୋମାଳିନ୍ୟ ଘଟୁଛି ଏକଥା ବୋଧେହୁଏ ବାପା ଲକ୍ଷ୍ୟ କରିଥିଲେ । ହୁଏତ ମୋର ଅନୁପସ୍ଥିତିରେ ତନୟା ତା'ର ଅଭିଜାତ୍ୟ ସଂପନ୍ନ ତଥାକଥିତ ମୌଳିକ ଚିନ୍ତାଧାରା ସହିତ ବାପାଙ୍କୁ ପରିଚିତ କରାଉଥିବ । ତେଣୁ ସେଦିନ ମୋର ବିଷଣ୍ଣ ମନ ଦେଖି ବାପା କହିଲେ, ''କାଙ୍ଗାଳି, ମୁଁ ତୋ ପାଇଁ ଯାହା କରିଛି ସେଥିରୁ କେବଳ ମିଳିଛି ବିଷ । ତୋର ଯଦି ଶକ୍ତି ଅଛି ସେ ବିଷକୁ ପିଇବୁ । ମାତ୍ର ପରିଣତ ବୟସର ଏ ବୁଢ଼ା ବାପାଟିକୁ ତୋର କ୍ଷମା ଦେବୁ ।''

ମୁଁ ବାପାଙ୍କ ମୁହଁକୁ ଚାହିଁଲି । ଦେଖିଲି ଗଭୀର ଦୁଃଖରେ ସତେ ଯେମିତି ସେ ଭାଙ୍ଗି ପଡ଼ିଛନ୍ତି, ସେ ଚାକିରିରୁ ଅବସର ନେଲା ବେଳେ ମୋର ଚାକିରି ନଥିଲା । ମାତ୍ର ସେ ଖୁବ୍ ଖୁସିଥିଲେ । ତେଣୁ ମୁଁ ତାଙ୍କୁ ପଚାରିଥିଲି, ''ବାପା, ମୁଁ ଦେଖୁଛି ତୁମ ଭଳି ଅନେକ ଶିକ୍ଷକ ଚାକିରୀରୁ ଅବସର ନେଲାବେଳେ ମୁହଁ ଶୁଖାଇ ବୁଲୁଛନ୍ତି । ମାତ୍ର ମୁଁ ତ ଦେଖୁଛି ସେଥିପାଇଁ ତୁମ ମନରେ ତିଳେହେଲେ ଦୁଃଖ ନାହିଁ ।

ସେଦିନ ସେ ହସି ହସି କହିଥିଲେ,''ମନ କାହିଁକି ଦୁଃଖ କରିବି ? ମୋର ଜୀବନକାଳରେ ଯେତିକି ଦିନ ଚାକିରି କରିବାର ଥିଲା ସେତିକି ଦିନ ଚାକିରି କଲି । ଆମେ ସିନା ଚାକିରି ଛାଡ଼ିଲେ, ଆମ ପିଲାଏ ଚାକିରି କରିବେ ।''

ମୁଁ ଲକ୍ଷ୍ୟ କଲି ଅବସର ଦିନଠାରୁ ଆନନ୍ଦ ଓ ଉଲ୍ଲାସ ମଧ୍ୟରେ ସମୟକାଟୁଥିବା ସେହି ଛାତ୍ରବତ୍ସଳ ପ୍ରାଥମିକ ଶିକ୍ଷକ ଜଣକ ଆଜି ଯେମିତି ଭାଙ୍ଗି ପଡ଼ିଛନ୍ତି । ଯେମିତି ସେ ଚିନ୍ତା କରୁଛନ୍ତି ଏକ ଅହେତୁକ ନିଷ୍ପତ୍ତି ଯୋଗୁଁ ସେ ତାଙ୍କ ପୁଅର ଜୀବନକୁ ନଷ୍ଟ କରିଛନ୍ତି । ତା'ର ତାରୁଣ୍ୟଭରା ଜୀବନର ହୃଦୟତନ୍ତ୍ରୀରେ ବିଷୟର ଜ୍ୱାଳାମୁଖୀ ବର୍ଷଣକୁ ସ୍ୱାଗତ କରିଛନ୍ତି ।

ମୁଁ ଆଉ ବାପାଙ୍କ ମୁହଁକୁ ଚାହିଁ ପାରିଲି ନାହିଁ ।

ସେଠାରୁ କ୍ଷୀପ୍ର ଗତିରେ ପଳାଇ ଗଲି ।

କାଙ୍ଗାଳିର ସୀମାହୀନ ବର୍ଣ୍ଣନାରେ ଏକ ଯବନିକା ଟାଣିବାକୁ ଯାଇଁ ମୁଁ କହିଲି, ''ସେ ତ ଅନେକ ଦିନର ଅତୀତ । ଆଜି ତୋର ବାପା ନାହାଁନ୍ତି କି ସେ ସମୟ ନାହିଁ । ବର୍ତ୍ତମାନ ତୋର ସ୍ତ୍ରୀ କ'ଣ ତୋ ପାଖକୁ ଆସୁନାହାଁନ୍ତି ?''

କାଙ୍ଗାଳି ଆରମ୍ଭକଲା, ''ଶାଶୁ ଶ୍ୱଶୁରଙ୍କୁ ସେବାରୁ ବଞ୍ଚିତ କରିଥିବା ସେହି ଆଭିଜାତ୍ୟ ସଂପନ୍ନା ସ୍ତ୍ରୀଟି ମୋର ଭୁଲିଗଲା ଯେ ତା'ର ମଧ୍ୟ ସ୍ୱାମୀ ପ୍ରତି କିଛି

କର୍ତ୍ତବ୍ୟ ଅଛି । ପ୍ରତିଟି ମୁହୂର୍ତ୍ତରେ ଛୋଟ ଛୋଟ କଥାରେ ଖିଅ ଯୋଡ଼ି କଳିଆ ଆରମ୍ଭ କଲା । ଦାମ୍ପତ୍ୟ ଜୀବନକୁ ଯେତେ ସରସ ସୁନ୍ଦର କରିବାକୁ ମୁଁ ଚେଷ୍ଟା କଲେ ମଧ୍ୟ ତା'ର ମନ ଭିତରେ ମୋ ପ୍ରତି ଘୃଣା ଭାବ ଥିବାର ମୁଁ ଲକ୍ଷ୍ୟ କଲି । ତଥାପି ସେହି ଘୃଣାର ଆବର୍ତ୍ତ ମଧ୍ୟରେ ଆମର ବୈବାହିକ ଜୀବନର ଚାରୋଟି ବର୍ଷ ମଧ୍ୟରେ ଦୁଇଟି ସନ୍ତାନ, ପୁଅ ଲିଟୁ ଓ ଝିଅ ମାମା, ମୋର ପରିବାର ମଧ୍ୟକୁ ଆସିଲେ । ମୋର ଦୁର୍ଭାଗ୍ୟକୁ ବିବାହର ଷଷ୍ଠ ବର୍ଷରେ ତନୟା ପି.ଏସ୍.ସି.ପାଇ ଅଧ୍ୟାପିକା ଚାକିରୀରେ ଯୋଗ ଦେଲା । ପିଲା ଦୁଇଜଣ ମୋର ମୁହଁକୁ ଭଲ ଭାବରେ ଚିହ୍ନିବା ପୂର୍ବରୁ ସେମାନେ ମୋଠାରୁ ଦୂରେଇ ଗଲେ ।''

ମୁଁ କାଙ୍ଗାଳିକୁ ପଚାରିଲି, ''ସେ ପିଲା ଦୁଇଜଣ ତ ଏବେ ବଡ଼ ହୋଇଯିବେଣି । ତୁ ସ୍ତ୍ରୀ ସହିତ ନହେଲେ ମଧ୍ୟ ସେମାନଙ୍କ ସହିତ ତ ଯୋଗଯୋଗ ରକ୍ଷା କରି ପାରିଥାନ୍ତୁ ?''

କାଙ୍ଗାଳି ହସି ହସି କହିଲା, ''ସେପରି ଯୋଗଯୋଗର କି ମୂଲ୍ୟ ଅଛି କହିଲୁ ଶୁଭେନ୍ଦୁ, ଇତି ମଧ୍ୟରେ ମା' ମନର ଘୃଣାଭାବ ମଧ୍ୟ ମୋର ଅନୁପସ୍ଥିତରେ ସେ ପିଲା ଦୁଇଜଣଙ୍କୁ ସଂକ୍ରମିତ କରିଥିବ । ସେଇଥିପାଇଁ ମୁଁ ସବୁଦିନ ପାଇଁ ନୀରବ ରହିଯିବା ଶ୍ରେଷ୍ଠ ମନେକଲି ।''

ଛେପ ଢୋକି ମୁଁ କହିଲି, ''କ'ଣ ବାରବର୍ଷ ?''

କାଙ୍ଗାଳି ଏକ ଦୀର୍ଘ ନିଃଶ୍ୱାସ ପକାଇ କହିଲା, ''ତୁ ଯେଉଁ ବାରବର୍ଷ କଥା କହୁଛୁ ମୁଁ ଜାଣେ ସେ ବାରବର୍ଷ ଆଇନ୍ ଅନୁସାରେ ଜଣକୁ ଛାଡ଼ପତ୍ର ଦେବା ପାଇଁ ଯଥେଷ୍ଟ । ତଥାପି ମୁଁ ତାହା କରିନି ?''

କାହିଁକି ? ମୁଁ ପଚାରିଲି ।

କାଙ୍ଗାଳି କହିଲା, ''ତାହା କରିଥିଲେ ମୋର ଇଚ୍ଛା ବିରୋଧରେ ମୋ ପାଇଁ ବୋହୂ ଠିକ୍ କରିଥିବା ମୋର ସ୍ୱର୍ଗୀୟ ପିତାଙ୍କ ଆତ୍ମାପ୍ରତି ଅପମାନ ହୋଇଥାନ୍ତା ।''

କାଙ୍ଗାଳି କ'ଣ କହୁଚି ମୁଁ ହଠାତ୍ ବୁଝି ପାରିଲି ନାହିଁ । ତେଣୁ ପଚାରିଲି, ''କାହିଁକି ଭାବୁଚୁ ଯେ ତୁ ତନୟାକୁ ଛାଡ଼ପତ୍ର ଦେଇ ଦେଲେ ତୋର ସ୍ୱର୍ଗୀୟ ପିତାଙ୍କ ଆତ୍ମାପ୍ରତି ଅବମାନନା ହୋଇଥାନ୍ତା ବୋଲି ?''

କାଙ୍ଗାଳି ଏଥରକ ମୁଖମଣ୍ଡଳରେ ଏକ କୃତ୍ରିମ ହସ ଫୁଟାଇ କହିଲା, ''ଏତିକି ତୁ ବୁଝୁନୁ, ସେ ପରା ହେଉଛି ମୋ ବାପାଙ୍କର ବୋହୂ ।''

''ବାପାଙ୍କର ବୋହୂ ସବୁଦିନ ପାଇଁ ସେମିତି ବାପାଙ୍କର ବୋହୂ ହୋଇ ରହୁ'' ତାହାହିଁ ମୁଁ ଚାହେ ।



# ଘର ତିଆରି

**ସେ**ଦିନ ଗାଁକୁ ଫେରିବା ବାଟରେ ନିଶଙ୍କ ବାବୁଙ୍କ ସହିତ ଦେଖାହେଲା । ହଠାତ୍ ବାବୁଙ୍କୁ ଚିହ୍ନିବା ମଧ୍ୟ ମୋ ପକ୍ଷରେ କଷ୍ଟକର ହେଲା । ମୁଁ ବା କାହିଁକି ଭାବିଥାନ୍ତି ପୂରିଲା ପୂରିଲା ଗାଲ, ସରସ ସୁନ୍ଦର ଚେହେରା ଥିବା ବାବୁ ଏଇ କେତୋଟି ବର୍ଷ ମଧ୍ୟରେ ବିବର୍ଣ୍ଣ ପଡ଼ି ଯାଇଥିବେ । ପ୍ରଥମେ ପ୍ରଥମେ ବାବୁଙ୍କୁ ଦେଖି ଟିକିଏ ଦୋ ଦୋ ପାଞ୍ଚ ହେଲି । ହେଲେ ବାବୁ ମୋତେ ଠିକ ଚିହ୍ନି ପାରିଲେ । ପଚାରିଲେ, 'ତୁମେ ଆମ ହରି ଭାଇନାଙ୍କ ପୁଅନା, କ'ଣ ଏବେ ଭୁବନେଶ୍ୱରରେ ଏକ ଶିକ୍ଷା ବିଭାଗର ଅଫିସରେ କାମ କରୁଛ ବୋଲି ଶୁଣିଚି, ଏହା ସତ ନା ?''

ବାବୁଙ୍କଠାରୁ ଏଇ କଥା ପଦକ ଶୁଣି ଆଉ କାଳବିଳମ୍ବ ନକରି ମୁଁ ବାବୁଙ୍କୁ ନମସ୍କାର କଲି । କହିଲି, ''କ୍ଷମା କରିବେ ଆଜ୍ଞା ! ମୁଁ ଆପଣଙ୍କୁ ହଠାତ୍ ଚିହ୍ନି ପାରିଲି ନାହିଁ ।''

ବାବୁ ତାଙ୍କର ସ୍ୱଭାବ ସୁଲଭ ଭାଷାରେ ଆରମ୍ଭ କଲେ, 'ତୁମେ ସିନା ମୋତେ ଚିହ୍ନି ପାରିଲ ନାହିଁ । ହେଲେ ମୁଁ ତୁମକୁ ଠିକ୍ ଚିହ୍ନିଲି । ଏହାର ରହସ୍ୟ କ'ଣ କହି ପାରିବ ?''

ମୁଁ ଟିକିଏ ଲଜ୍ଜିତ ହୋଇ କହିଲି, ''ଦୀର୍ଘଦିନ ହେଲା ଗାଁକୁ ଆସି ନାହିଁ । ବୋଧହୁଏ ସେଇଥିପାଇଁ.. ।''

ବାବୁ ଟିକିଏ ଗମ୍ଭୀର ହୋଇ ଆରମ୍ଭ କଲେ, ''ହଁ, ହଁ, ତା' ବି ଏକ କାରଣ । ଅବଶ୍ୟ ମୁଁ ସେ କାରଣକୁ ଏକ ବିଶେଷ କାରଣ ରୂପେ ବିଚାର କରେନାହିଁ । ଆଜିକାଲି ପାଠ ପଢୁଆ ପିଲାଏ ଗାଁ ଛାଡ଼ି ସହରୀ ହେବେ, ବର୍ଷକୁ ଥରେ ଅଧେ ଥୁଣ୍ଟା ଗଛଭଳି ବଞ୍ଚି ରହିଥିବା ବୁଢ଼ାହଡ଼ାମାନଙ୍କୁ ଥରୁଟିଏ ବି ଦେଖିବା ପାଇଁ ଗାଁକୁ ଆସିବେ ନାହିଁ । ଅବଶ୍ୟ ସେମାନେ ତ ଆମ ପୁଅ ପୁତୁରା ଭଳି, ସେମାନଙ୍କ ମନ କ'ଣ ଆସିବାକୁ ହେଉ ନଥିବ । ହେଲେ ସେମାନଙ୍କ ମେମ୍ ସାହେବମାନେ... ।''

ବାବୁଙ୍କ କଥା କାନକୁ ଅପ୍ରିୟ ଶୁଣା ଯାଉଥିଲେ ମଧ୍ୟ ସେଥିରେ କିଛି ସତ୍ୟତା ଥିଲା । ମୁଁ ନୀରବ ରହିଲି ।

ବାବୁ ପୁରୁଖା ଥିଲେ । ମୋ ମନରେ ଦୁଃଖ ଲାଗିଚି ଜାଣି କହିଲେ, ''ଆରେ ମୁଁ ତୁମକୁ କହୁନି । ତୁମେ ମୋ କଥା ମନକୁ ନେବ ନାହିଁ । ମୁଁ ପାଠ ପଢୁଥିଲା ବେଳେ ଇତିହାସର ଛାତ୍ର ଥିଲି । ଇତିହାସ ସହିତ ଭାଷାଥାଏ, ଭାଷା ଯେଉଁଠି ଥାଏ ସେଠି ସାହିତ୍ୟ ଥାଏ, ସାହିତ୍ୟ ସହିତ ଭାଷାଥିଲେ ଭାବନା ବି ଆପେ ଆପେ ଆସିଯାଏ । ତେଣୁ ମୁଁ କହିବାକୁ ଚାହୁଥିଲି... ''

କ'ଣ ? ମୁଁ ପଚାରିଲି ।

ବାବୁ କହିଲେ, ''ମୁଁ ତୁମକୁ ଚିହ୍ନି ପାରିବାର କାରଣ ?''

କ'ଣ ? ମୁଁ ପୁଣି ପଚାରିଲି ।

ମୁଁ ଅଶୀବର୍ଷର ବୁଢ଼ା ହେଲେ ବି ତୁମକୁ ଠିକ୍ ଦେଖି ପାରୁଚି । ମାତ୍ର ତୁମେ ତିରିଶ ବର୍ଷର ଯୁବକ ହେଲେ ବି ଚଷମା ଦେଇଚ । ତୁମ ଗାଁର ପରିଚିତ ବୁଢ଼ା ବାପା ସମାନ ମଣିଷଟିକୁ ଚିହ୍ନି ପାରୁନା ?

ବାବୁଙ୍କ କଥା ଶୁଣି ହସିଲି ।

ବାବୁ ମଧ୍ୟ ତାଙ୍କର ପାକୁଆ ପାଟିରେ ବେଶ୍ ଭଲ ହସଟିଏ ଠୋ ଠୋ କରି ହସିଦେଲେ ।

ଏମିତି ବାଟରେ ଯାଉ ଯାଉ ପଚାରିଲି ''ବାବୁ ପ୍ରଦୀପ କ'ଣ କରୁଚି ?''

ପ୍ରଦୀପ ହେଉଛି ବାବୁଙ୍କର ବଡ଼ ପୁଅ । ମୋର ସହପାଠୀ ।

ବାବୁ ପ୍ରଦୀପ ବିଷୟରେ କିଛି ନକହି ଆରମ୍ଭ କଲେ, ''ତୁମେ ଭୁବନେଶ୍ୱରରେ ଘର କରୁଛ ?''

ହଁ, ମୁଁ କହିଲି ।

କେଉଁଠି କରୁଛ ?

ପଟିଆ ପାଖରେ ।

ସେ ଘରେ କିଏ ରହିବ ?

ମୁଁ ଓ ମୋ ସ୍ତ୍ରୀ ।

ଆଉ କେଉଁମାନେ ?

ମୋ ପିଲାମାନେ ।

ତୁମ ବଡ଼ପୁଅ କ'ଣ କରୁଚି ?

ଉତ୍କଳ ବିଶ୍ୱବିଦ୍ୟାଳୟରେ ଏମ୍.ଏ. ପଢୁଛି ?

ବେଶ୍ ଭଲ କଥା, ବାବୁ କହିଲେ । ମାତ୍ର କିଛି ସମୟ ପରେ ପାଟିରେ ଟିକିଏ ଛେପ ଢ଼ୋକି କହିଲେ, ''ସବୁ କରିବ, ହେଲେ ତାକୁ ସେ ଘର ତିଆର ପାଖକୁ ପଠାଇବ ନାହିଁ ?''

ମୁଁ ପଚାରିଲି, ''କାହିଁକି ?''

ବାବୁ ଆରମ୍ଭ କଲେ, ''ପ୍ରଦୀପ ଯାହା କଲା, ସିଏ ବି ତାହା କରିପାରେ ?''

ବାବୁଙ୍କ କଥା ଶୁଣି ମୁଁ ଟିକିଏ ନୀରବ ରହିଲି । ମନେ ମନେ ଭାବିଲି, ଦୀର୍ଘ ଦଶବର୍ଷ ତଳେ ବାବୁ ବାଲେଶ୍ୱରରେ ଟ୍ରେଜେରୀ ଅଫିସର ଥିଲାବେଳେ ତାଙ୍କର ଘର ତିଆରି ହେଉଥିଲା । ମୋ ବାପା ବି ସେହି ସମୟରେ ବାଲେଶ୍ୱରର ଏସ୍.ଡି.ଓ. ଅଫିସରେ କାମ କରୁଥିଲେ । ଫକୀର ମୋହନ କଲେଜରେ ପ୍ରଦୀପ ସହିତ ସେହି ଘର ତୋଳା ସ୍ଥାନକୁ ଯାଇଛି । ବାବୁ କି ଖରା କି ବର୍ଷା, ଭୋକ ଓ ଉପବାସରେ ରହି ଘର କାମ କରାଇବାର ଦୃଶ୍ୟ ମଧ୍ୟ ଏ ଆଖିରେ ଦେଖିଛି । ମଝିରେ ମଝିରେ ପାଣି ପୂରାଇ ଛତୁଆ ଖାଇବାର ଦୃଷ୍ଟାନ୍ତ ମଧ୍ୟ ମୋ ନଜରକୁ ଆସିଛି । ତେବେ ପ୍ରଦୀପ ଏପରି କ'ଣ କଲା ଯେ ବାବୁଙ୍କ ମନରେ ଦୁଃଖ ଲାଗିଛି ।

କିଛି ସମୟର ନୀରବତା ପରେ ମୁଁ ପଚାରିଲି, ''ବାବୁ ମହାଶୟ, ପ୍ରଦୀପ ଏପରି କ'ଣ କଲା ଯେ ଆପଣଙ୍କ ମନରେ ଦୁଃଖ ଲାଗିଛି ?''

ବାବୁ କହିଲେ, ''ନା, ନା, ପ୍ରଦୀପ ମୋର ପୁଅ, ସେ ସେପରି କିଛି କରିବନି ଯାହା ଫଳରେ ମୋ ମନରେ ଦୁଃଖ ଲାଗିବ । ତେବେ... ।''

ତେବେ ଆଉ କ'ଣ ? ମୁଁ ଉତ୍କଣ୍ଠାର ସହିତ ପଚାରିଲି ।

ବାବୁ ପାଟିରେ ଟିକିଏ ଛେପ ଢ଼ୋକି କହିଲେ, ''ମୁଁ ସେଠାରେ ଘର କରୁଥିଲି । ମୁଁ ନିଜେ ରହିବି । କିନ୍ତୁ ପ୍ରଦୀପ ମୋ ଘର ତିଆରି କରିବାରେ ମୋତେ ସାହାଯ୍ୟ କରିବାକୁ ଯାଇ ସେଠାକାର କାଠିକୁଟା ପାଣି ପବନ ବାଆବତାସ ନେଇ ତା' ଘର ଗଢ଼ି ବସିଲା । ମୋ ଘର ତିଆରି କରିବା ଛାଡ଼ିଦେଇ ପଡ଼ୋଶୀ ଘରର ଷୋଡ଼ଶୀ ଝିଅ ସହିତ ହାତ ମିଳାଇ ତା' ଘର ତିଆରି କଲା ।''

ମୋ ପାଟିରୁ ହଠାତ୍ ବାହାରି ଆସିଲା, ''ଆପଣ କ'ଣ ତା' ଘରକୁ ସ୍ୱୀକୃତି ଦେଲେନାହିଁ ।''

ବାବୁ ଥଥ ମମ ହୋଇ କହିଲେ, ''ମୋ ସ୍ୱୀକୃତି ଦେବା ପର୍ଯ୍ୟନ୍ତ କଥା ରହିଲା ନାହିଁ କିମ୍ବା ପ୍ରଦୀପ ମଧ୍ୟ ମୋର ସ୍ୱୀକୃତି ପାଇଁ ମୋ ଆଗରେ ଦିନେ ପ୍ରଶ୍ନ ଉଠାଇଲା

ନାହିଁ । ସରଳ ନିଃଷ୍ପାପ ସୁନା ପିଲାଟି ଭଳି ଗୋଟିଏ ବର୍ଷ ବିତାଇ ଦେଲା । ପଡ଼ୋଶୀ ଘରର ସେହି ଝିଅ ସହିତ ଅବାଧ ମିଳାମିଶାରେ ତା'ର ସମୟ ଗଲା ।''

''ଏକଥା ଘଟୁଥିଲା ମୋର ଅଜ୍ଞାଣତରେ ।''

ପୁଣି ବାବୁ ଆରମ୍ଭ କଲେ,''ସେଦିନ ସନ୍ଧ୍ୟାବେଳେ ମୁଁ ଆର୍ମଚେୟାରରେ ଟିକିଏ ଘୁମେଇ ପଡ଼ିଛି । ବହୁଦିନର ବହୁଘଟଣା ଦେଖିଥିବା ଆଖି ଦୁଇଟି ମୋର ବନ୍ଦ ହୋଇଯାଇଥିଲେ ମଧ୍ୟ ବହୁ ଅତୀତର ଘଟଣା ଓ ଦୃଶ୍ୟମାନ ମୋ ଆଖି ଆଗରେ ନାଚି ଉଠୁଛି । ଏପରିକି ପ୍ରଦୀପର ବିଭାଘର ନିମନ୍ତେ ଦେଖି ଯାଇଥିବା କେତୋଟି ତରୁଣୀ.. ଭବିଷ୍ୟତର ମୋର କୁଳବଧୂ... ।''

ତା'ପରେ , ମୁଁ ଉତ୍କଣ୍ଠାର ସହିତ ପଚାରିଲି ।

ବାବୁ କହିଲେ,''ହଠାତ୍, ଆଖି ଖୋଲିଲା ବେଳକୁ ଦେଖିଲି ଥୋପାଏ ସିନ୍ଦୂର ପିନ୍ଧି ଏକ ଆସନ୍ନ ପ୍ରସବା ତରୁଣୀ ମୋ ଆଗରେ ଠିଆ ହୋଇଛି ।''

ତରୁଣୀଟିକୁ ଦେଖି ମୁଁ ପଚାରିଲି,''ତୁମେ କିଏ ?''

ଲଜ୍ଜାର ଅବଗୁଣ୍ଠନ ସହିତ ତରୁଣୀଟି କହିଲା,'ଆପଣଙ୍କ କୁଳବଧୂ ।''

ହଠାତ୍ ମୋର ଆଖି ଅନ୍ଧାର ମଧ୍ୟରେ ଝଲସି ଉଠିଲା । ପଚାରିଲି,''ମୋର କୁଳବଧୂ !''

ତରୁଣୀଟି କହିଲା,''ଆପଣଙ୍କ ପ୍ରଦୀପବାବୁଙ୍କ ବଧୂ ମୁଁ ।''

''ନା, ଏହା ଅସମ୍ଭବ ।'' ମୁଁ ଚିତ୍କାର କରି ଉଠିଲି । ମୋର ବିନା ମତାମତରେ ସବୁଠାରୁ ଆଦର୍ଶବାନ ପୁଅ ମୋର ଯେ ଏପରି କାଣ୍ଡ କରିବ ଏହା ମଧ୍ୟ ମୋର ବିଚାରର ବାହାରେ ଥିଲା । ମୋ ଜୀବନର ସମସ୍ତ ହିସାବ ନିକାଶ ଅମେଳ ଧରିଲା । ତଥାପି ଧୈର୍ଯ୍ୟର ସହିତ ପଚାରିଲି, ''କିନ୍ତୁ ମା'... ।''

ମୋଠାରୁ ମା' ସମ୍ବୋଧନକୁ ଶୁଣି ଝିଅଟି କାନ୍ଦି ଉଠିଲା । କହିଲା,''ଆପଣଙ୍କ ଘର ତୋଳା ସମୟରେ ପ୍ରଦୀପବାବୁ ପାଣି ପିଇବାକୁ ଆମ ଘରକୁ ଆସିଥିଲେ । ପାଣି ପିଇବାକୁ ବାରମ୍ବାର ଆସିବାରୁ ମୁଁ ଆପତ୍ତି ଉଠାଇଲି । ମା' ମୋର ମୋତେ ବୁଝାଇଲେ,''ଝିଅ, ତୃଷାର୍ତ୍ତକୁ ପାଣି ଦେଲେ ଧରମ ହେବ । ତୁ କାହିଁକି ମନା କରିବୁ ?''

ଝିଅଟି ପୁଣି କହି ଚାଲିଲା,''ବାବୁ, ଦିନେ ପ୍ରଦୀବବାବୁଙ୍କୁ ମୁଁ ପାଣି ଗିଲାସଟି ବଢ଼ାଇ ଦେଲି । ସେଦିନ ଘରେ ମୋ ମା' ନଥିଲେ କି ବାପା ବି ନଥିଲେ । ସେହି ସୁଯୋଗରେ ମୋର ହାତକୁ ଧରି ପ୍ରଦୀପ ବାବୁ କହିଲେ,''ପାଣିରେ କେବେ ତୃଷା

ମେଷ୍ଟେନା ରୂପା । ତୃଷା ଯଦି ମେଣ୍ଟୁ ଥାନ୍ତା, ତେବେ ଲୋକେ ସବୁ ବେଳେ ପାଣି ପିଉଥାନ୍ତେ ।'' ଏହାକହି ସେ ମୋ ଉପରେ ଆକ୍ରମଣ କଲେ । ଏକ ପଶୁତୁଲ୍ୟ ଆକ୍ରମଣ । ଯାହା ଫଳରେ ଆପଣଙ୍କ କୁଳର ସ୍ମାରକ ଆଜି ଅପେକ୍ଷା କରିଛି ନୂତନ ଆଲୋକ ସନ୍ଧାନରେ ।

ମୁଁ ପଚାରିଲି, ଆପଣ ତା' ପରେ କ'ଣ କହିଲେ ବାବୁ ?

ବାବୁ କହିଲେ,''ଆଉ କହିବି କ'ଣ ? ଜୀବନରେ ଅନେକ କଥା କହୁଥିବା ବ୍ୟକ୍ତି, ପର ପାଇଁ ନିଶାପ କରୁଥିବା ବ୍ୟକ୍ତିକୁ ଯେ ନୀରବ ରହି ନିଜ ପାଇଁ ନିଜେ ନିଶାପ କରିବାକୁ ପଡ଼ିବ, ଏକଥା ମୁଁ ଜୀବନର ଶେଷାର୍ଦ୍ଧରେ ଜାଣିବାକୁ ପାଇଲି । ତେଣୁ ଝିଅଟିକୁ କହିଲି,''ମା, ତୁ ବ୍ୟସ୍ତ ହୁଅନା । ଏ ସମସ୍ୟାର ମୁଁ ଏକ ଯଥାର୍ଥ ସମାଧାନ କରିବି ।''

ପୁଣି ଆଖି ଛଳ ଛଳ କରି ବାବୁ ଆରମ୍ଭ କଲେ,''ପୁଅ, ମୋର କଥା ସରିନି, ପ୍ରଦୀପ ହଠାତ୍ ଆସି ସେଠାରେ ପହଞ୍ଚିଲା । ସହସା ରୂପାକୁ ଦେଖି ତଟସ୍ଥ ହେଲା । ଘର ଭିତରକୁ ପଶି ଯାଉଥିଲା ।

ମୁଁ ଡାକିଲି,''ପ୍ରଦୀପ, ରୂପା ଯାହା କହୁଛି, କ'ଣ ସତ ?''

ପ୍ରଦୀପ କହିଲା,''ରୂପା, କେଉଁ ରୂପା ମୁଁ ଜାଣେନା ?''

ମୁଁ କହିଲି,''ମୋ ଆଗରେ ଠିଆ ହୋଇଥିବା ଏଇ ରୂପା । ଯିଏ ଦାବି କରୁଛି ତା'ର ଗର୍ଭରେ ଥିବା ସନ୍ତାନ ତୋର ?''

ପ୍ରଦୀପ ଅତି ସରଳ ଭାବରେ ଉତ୍ତର ଦେଲା,''ବାପା, ତୁମେ ଏକଥା ବିଶ୍ୱାସ କରୁଛ !''

ମୁଁ କହିଲି,''ନା ।''

ପ୍ରଦୀପ ପଚାରିଲା,'ତେବେ ?''

ମୁଁ ଆରମ୍ଭ କଲି,'ତେବେ ଯଦି କିଛି ନାହିଁ, ତଥାପି ମୋ ପାଖକୁ ଅଭିଯୋଗ ଆସିଛି । ଯେଉଁ ଅଭିଯୋଗର ସତ୍ୟାସତ୍ୟ ଜାଣିବା ମୁଁ ନିତାନ୍ତ ଜରୁରୀ ମନେ କରୁଛି ।''

ପ୍ରଦୀପ କହିଲା,''ଏହାର ଆବଶ୍ୟକତା ନାହିଁ ।''

ମୁଁ କହିଲି,''ତୋ ପାଇଁ ସିନା ନାହିଁ, କିନ୍ତୁ ମୋ ପାଇଁ ଅଛି । ଯଦି ରୂପାର ଅଭିଯୋଗ ସତ୍ୟ ହୁଏ, ତେବେ ମୋର କୁଳବଧୂକୁ ମୋ ଘରକୁ ଆଣିବାକୁ ପଡ଼ିବ । ମୋ ପରିବାରର କୁଳ ଚନ୍ଦ୍ରମାକୁ ଉପଯୁକ୍ତ ମର୍ଯ୍ୟାଦା ଦେଇ ଭବିଷ୍ୟତର ଅପବାଦରୁ ସୁରକ୍ଷିତ ରଖିବାକୁ ପଡ଼ିବ ।''

ମୋ କଥା ଶୁଣି ପ୍ରଦୀପର ମୁଖମଣ୍ଡଳ ଗମ୍ଭୀର ହୋଇଉଠିଲା । ସେ କହିଲା,''ବାପା, ଆପଣ ଅଯଥାରେ ଇମୋସନାଲ ହୋଇପଡୁଛନ୍ତି । ଭିତ୍ତିହୀନ ରୂପାର ଅଭିଯୋଗକୁ ଯେ ଆପଣ ଏତେ ଗୁରୁତ୍ୱ କାହିଁକି ଦେଉଛନ୍ତି ମୁଁ ଆଦୌ ବୁଝିପାରୁନି ।''

ବାପା ହିସାବରେ ମୁଁ କହିଲି,''ପ୍ରଦୀପ ତୋତେ ମୁଁ ଜାଣେ । ଆଜି ନୁହେଁ ପିଲାଟି ବେଳୁ । ତୋ କଥାକୁ ମୁଁ ଭୁଲ ବୁଝୁନି କିମ୍ବା ରୂପାର କଥାକୁ ମଧ୍ୟ ମୁଁ ଅସତ୍ୟ ମଣୁନି । ସତ୍ୟର ଅଗ୍ନିପରୀକ୍ଷା ନିମନ୍ତେ ରୂପା ଆଜିଠାରୁ ଆମଘରେ ରହିବ । ତା'ର ସନ୍ତାନ ଜନ୍ମ ହେବାପରେ ତୁମ ଦୁହିଁଙ୍କର ଡି.ଏନ୍.ଏ. ପରୀକ୍ଷା ହେବ । କ'ଣଏଥିରେ ରାଜି ?''

ପ୍ରଦୀପ ହଁ କଲା ।

ପୁଣି ବାବୁ ମୋତେ ଲକ୍ଷ୍ୟ କରି ଆରମ୍ଭ କଲେ, ''ବୁଝିଲ ପୁଅ, ସେଦିନ ସେହି ମୁହୂର୍ତ୍ତରୁ ରୂପା ସିନା ମୋ ଘରେ ରହିଲା, ମାତ୍ର ପ୍ରଦୀପ ସେଦିନ ରାତିରୁ ମୋର ଘର ଛାଡ଼ି ଚାଲିଗଲା । ଆଜିକୁ ଦୁଇବର୍ଷ ବିତିଗଲାଣି । ରୂପାର ସେଇ କୁନି ପୁଅଟି ଆଉ କେତୋଟି ଦିନରେ ତା'ର ତୃତୀୟ ଜନ୍ମ ବର୍ଷ ପାଳିବ । ହେଲେ ପ୍ରଦୀପର ଦେଖାନାହିଁ ।''

ମୁଁ ଲକ୍ଷ୍ୟ କଲି ବାବୁଙ୍କ ଆଖିରୁ ଦୁଇବୁନ୍ଦା ଲୁହ ଆସି ତଳେ ପଡ଼ିଲା । ତାଙ୍କର ସେ ଧୋବ ଫର ଫର ଲୁଗାର କାନିରେ ସେ ଆଖି ଦୁଇଟି ପୋଛିଲେ । ମୁଁ ପଚାରିଲି,''ବାବୁ, ପ୍ରଦୀପଠାରୁ କ'ଣ କୌଣସି ଚିଠି ପାଇ ନାହାଁନ୍ତି ?'' ତା'ର ଶେଷ ଚିଠିଟି କେବେ ଆସିଥିଲା ?''

ଘରଛାଡ଼ି ଗଲାଦିନଠାରୁ ପ୍ରଦୀପଠାରୁ କୌଣସି ଚିଠି ପାଇନାହିଁ । ଘରଛାଡ଼ି ଚାଲିଗଲାବେଳେ ସେ ଗୋଟିଏ ଛୋଟ କାଗଜରେ ଦୁଇଧାଡ଼ି ଲେଖିଯାଇଥିଲା,''ବାପା, କଠୋର ସତ୍ୟ ଓ ଦେବୋପମ ବାପାଙ୍କ ପାଖରେ ଏକ ପାପଯୁକ୍ତ ମଣିଷ ଭଳି ଠିଆହେବା ଯେ କେତେ କଷ୍ଟକର ତାହା ମୁଁ ଅଙ୍ଗେ ଅଙ୍ଗେ ନିଭାଉଛି । ଡି.ଏନ୍.ଏ. ଟେଷ୍ଟ ନିମନ୍ତେ ଅପେକ୍ଷାକରିବାର ଧୈର୍ଯ୍ୟ ମୋର ନାହିଁ । ଆପଣଙ୍କ ଘରର ସେ ପ୍ରଶସ୍ତ ନିଅଁ ଓ ଚଉଡ଼ା ବନ୍ଧ ମୋ ମୁଣ୍ଡରେ ଶକ୍ତ ମାନସିକ ଆଘାତ ଦେଇଛି । ମାନସିକ ବ୍ରେନ୍‌ହାମରେଜ୍‌ରୁ ରକ୍ଷା ପାଇବା ପରେ ମୁଁ ପୁଣି ଫେରିଆସିବି । ରୂପା ଓ ତା'ର ଭବିଷ୍ୟତ ସନ୍ତାନ ଆପଣଙ୍କ ପାଖରେ ଥାଆନ୍ତୁ ।''

ପ୍ରଦୀପ କଥା ଶୁଣି ମୁଁ କହିଲି,''ବାବୁ, ପ୍ରଦୀପ ଏ କ'ଣ କଲା ?'' ବାବୁ ସଙ୍ଗେ ସଙ୍ଗେ କହିଲେ,''ତୁମେ କୁହ ପୁଅ, ମୋର ଘର ତିଆରି କରିବା କ'ଣ ଏକ

ସ୍ୱପ୍ନ ନଥିଲା । ସେହି ଘର ତିଆରି ସହିତ ସାମିଲକରି ପ୍ରଦୀପ ପାଇଁ ମୁଁ କ'ଣ ଏକ ଦୁଃସ୍ୱପ୍ନ ତୋଳି ଦେଇ ନଥିଲି ? ତେବେ ମୋର ଦୁଃଖ...!!

ମୁଁ ପଚାରିଲି, ''କ'ଣ ବାବୁ ?

ବାବୁ କହିଲେ, ''ମୋ ଘର ତିଆରିରେ ସିନା ପ୍ରଦୀପର ଏକ ଦରଭଙ୍ଗା ଘର ତିଆରି ହେଲା, ହେଲେ ପ୍ରଦୀପ ଯଦି ନଫେରେ ତେବେ କାହାକୁ କିପରି ନେଇ ତା'ର ସେହି କୁନି ପୁଅଟି ତା'ର ଘରି ତିଆରି କରିବ ।''

ମୁଁ ହସି ହସି କହିଲି, ''ବାବୁ, ଆପଣ ଆଦୌବ୍ୟସ୍ତ ହୁଅନ୍ତୁ ନାହିଁ । ସବୁ ଠିକ୍ ହୋଇଯିବ । ସମସ୍ତଙ୍କର ସବୁ ସମୟରେ ଘର ତିଆରି ହୋଇଛି । ଦିନେନା ଦିନେ ସେଇ କୁନି ପୁଅଟିର ଘର ତିଆରି ହୋଇଯିବ ।''

ବାବୁ ଏକ ଦୀର୍ଘ ନିଃଶ୍ୱାସ ପକାଇ କହିଲେ, ''ତାହା ହିଁ ହେଉ ।''



# ଭାଇରସ୍

ମୋର ଦୈହିକ ରୋଗଜନିତ ସମସ୍ୟା ସମ୍ପର୍କରେ ମୁଁ ଯେତେବେଳେ ମୋର ସତୀର୍ଥ ଡାକ୍ତରବନ୍ଧୁ ସୌରଭଙ୍କୁ କୁହେ ସେତେବେଳେ ସେ ଈଷତ୍ ହସି କହନ୍ତି, ‘‘ତୋର ରୋଗ ପାଇଁ କୌଣସି ଚିକିତ୍ସା ନାହିଁ । ସେମିତି ଯଦି ବାଧ୍ୟ କରୁଛୁ ତେବେ ଗୋଟେ ଅଧେ ମେଡ଼ିସିନ୍ ଲେଖି ଦେଉଛି । ଖାଇନେବୁ, ସେଥିରେ ତୋ ମନ ଶାନ୍ତି, ମୁଁ ବି ଶାନ୍ତି ।’’

ମୁଁ ସୌରଭଙ୍କର ଏପରି ପ୍ରଶ୍ନର ଉତ୍ତର ଶୁଣି ନୀରବ ନରହି ପଚାରେ, ‘‘ମୋର ଏପରି କ’ଣ ରୋଗ ଯେ ସେଥିପାଇଁ ଔଷଧ ନାହିଁ । ଆପେ ଆପେ ସାତ ଆଠଦିନ ମଧ୍ୟରେ ରୋଗ ଭଲ ହୋଇଯିବ । ଆଉ ତୋ ଭଳି ଡାକ୍ତର ବନ୍ଧୁଟିଏ ଥାଉ ଥାଉ ମୁଁ ସାତ ଆଠଦିନକାଳ ଯନ୍ତ୍ରଣାରେ ଛଟପଟ ହେବି ?’’

ମୋର ପ୍ରଶ୍ନ ଶୁଣି ସୌରଭ ହସେ । କହେ, ‘‘ବୁଝିଲୁ, ତୋତେ ଭାଇରସ୍ ଜନିତ ରୋଗ ହୋଇଛି । ଅର୍ଥାତ୍ ଭାଇରସ୍ ଆକ୍ରମଣରୁ ତୁ ଥଣ୍ଡା ଜର ଭୋଗୁଛୁ । ଆପେ ଆପେ ସାତ ଆଠ ଦିନ ମଧ୍ୟରେ ତୋ ଶରୀରରେ ସୃଷ୍ଟି ହୋଇଥିବା ଭାଇରସ୍‌ଗୁଡ଼ିକ ମରିଯିବେ । ତୁ ରୋଗରୁ ରକ୍ଷା ପାଇବୁ । ତୋର ଏପରି ରୋଗ ପାଇଁ କୌଣସି ଔଷଧ ନାହିଁ । ଅଯଥାରେ ଏଣୁ ତେଣୁ ଔଷଧ ଖାଇବାକୁ ଦେଇ ତୋ ଦେହରେ ମୁଁ କାହିଁକି ଆଉ ଏକ ନୂତନ ରୋଗ ସୃଷ୍ଟି କରିବି ?’’

ସୌରଭର ଯୁକ୍ତିରେ ମୁଁ ଦବି ନଯାଇ କହେ, ‘‘ସୌରଭ, ସେଦିନ ମୋର ବନ୍ଧୁଙ୍କୁ କୌଣସି ଏକ ଭାଇରସ୍ ଜନିତ ରୋଗ ହୋଇଥିଲା । ତଥାପିତ ଜଣେ ଡାକ୍ତର ବନ୍ଧୁ ତାକୁ ଔଷଧ କିଛି ଖାଇବାକୁ ଦେଇଥିଲେ ।’’

ମୋର କଥା ଶୁଣି ସୌରଭ ହସେ ।

କହେ, ‘ ମୁଁ ଜାଣେ ତୁ ଅଲିଭର୍ ଗୋଲଡ଼ସ୍ମିଥଙ୍କ ଭିଲେଜ୍ ସ୍କୁଲ ମାଷ୍ଟର ଭଳି ମୋ ସହିତ ଯୁକ୍ତି କରିବୁ । ସେଥିପାଇଁ ମୋ ଡାକ୍ତରୀ ବିଦ୍ୟାରୁ ତୋତେ ଟିକିଏ ବୁଝାଇ କହୁଛି ।’’

ମୁଁ କୁହେ,''ଭଲ କଥା, ଟିକିଏ ବୁଝାଇଦେ ।''

ସୌରଭ ଆରମ୍ଭ କରେ,''ଆଜି ପର୍ଯ୍ୟନ୍ତ ଭେଷଜ ବିଜ୍ଞାନରେ ଭାଇରସ୍‌କୁ ପ୍ରତ୍ୟକ୍ଷ ଭାବରେ ମାରିବା ପାଇଁ କୌଣସି ଔଷଧ ସୃଷ୍ଟି ହୋଇନାହିଁ । ମାତ୍ର ପରୋକ୍ଷ ଭାବରେ କେତେକ ଭାଇରସ୍‌କୁ ମରାଯାଇ ରୋଗକୁ ଭଲ କରାଯାଇ ପାରୁଛି ।''

'କିପରି' ମୁଁ ପଚାରେ ?''

ସୌରଭ କୁହେ,''ମାନବ ଶରୀରରେ ନିର୍ଦ୍ଦିଷ୍ଟ ପ୍ରକାରର ଭାଇରସ୍ ନିର୍ଦ୍ଦିଷ୍ଟ ପ୍ରକାରର ଉପାଦାନ ଖାଇ ଅଳ୍ପଦିନ ପାଇଁ ବଞ୍ଚିଥାନ୍ତି । ସେହି ଉପାଦାନଗୁଡିକୁ ଯଦି ଔଷଧ ମାଧ୍ୟମରେ ବନ୍ଦ କରିଦିଆଯାଏ, ତେବେ ସେମାନଙ୍କୁ ଉପବାସ ରହିବାକୁ ପଡ଼େ । ଖାଦ୍ୟ ବିନା ସେମାନେ ମରିଯାନ୍ତି । ତେଣୁ ମଣିଷ ଶରୀରରେ ସୃଷ୍ଟି ହୋଇଥିବା ରୋଗ ଆପେ ଆପେ ଭଲ ହୋଇଯାଏ ।''

ସୌରଭର ଭାଇରସ୍ ସମ୍ବନ୍ଧୀୟ ଶୁଦ୍ଧ ଯୁକ୍ତି ମୋର ମନ ଗ୍ରହଣ କରେ ।

ମୁଁ ତାକୁ ଧନ୍ୟବାଦ ଜଣାଇ କୁହେ,''ସୌରଭ, ମୁଁ ଭିଲେଜ ସ୍କୁଲ ମାଷ୍ଟର ହେଲାରୁ ସିନା ଏତେ କଥା ଜାଣି ପାରୁଛି । ଖାଲି ଯଦି ନୀରବ ରହିଥାନ୍ତି, ତେବେ ଏତେକଥା ଜାଣନ୍ତି କିପରି ?''

ସୌରଭ ମୋ କଥା ଶୁଣି କୁହେ,''ଯାଆ, ଆର ଥରକୁ ଆସିବୁ । ତୋତେ ନିଶ୍ଚିତ ରୂପେ ଭାଇରସ ବିହୀନ ରୋଗ ହେବ । ମୁଁ ଏତେ ଔଷଧ ଲେଖିବି ଯେ ଖାଇ ଖାଇ ତୁ ଶାନ୍ତ ହେଇଯିବୁ । କିନ୍ତୁ ଆଜି ପାଇଁ ଔଷଧ ନାହିଁ... ।''

ଦୀର୍ଘ ଚାକିରୀ ଜୀବନର ସୁଦୂର ପଥ ଅତିକ୍ରମ କରି ସୌରଭ ଆଜି ମୋଠାରୁ ବହୁତ ଦୂରକୁ ଚାଲିଯାଉଛି । ଆମେରିକାର କୌଣସି ଏକ ମେଡ଼ିକାଲ ଅନୁଷ୍ଠାନରେ କାମ କରୁଛି । ସମୟର ବ୍ୟବଧାନ ମଧ୍ୟରେ ମାଇଲଖୁଣ୍ଟ ସଦୃଶ ଛିଡ଼ା ହେବା ପାଇଁ ମଧ୍ୟ ମୁଁ ତାପାଖକୁ ଚିଠିଟିଏ ଲେଖିନାହିଁ । ସେ ମଧ୍ୟ ତା'ର ଭଲମନ୍ଦ ଲେଖି ମୋ ପାଖକୁ ଚିଠିଟିଏ ଦେଇନାହିଁ ।

ମାତ୍ର ସୌରଭର ସେହି 'ଭାଇରସ୍' ସଂପର୍କୀୟ ମଜା କଥା ମୁଁ ଭୁଲିପାରିନି । ସମୟର ସୁଖ-ଦୁଃଖ, ଭଲ-ମନ୍ଦ ମଧ୍ୟରେ ମୋର ମନେ ରହଛି ଭାଇରସ୍ ।

କିନ୍ତୁ ଭାଇରସକୁ ନେଇ ଯେ ପୁଣି ଏକ କଥା ଓ କାହାଣୀ ସୃଷ୍ଟି ହେବ ସେକଥା ମୁଁ ଜାଣି ନଥିଲି ।

ସେଦିନ ଶଶାଙ୍କ ମୋ ପାଖକୁ ଆସିଥିଲା । କହିଲା,''ଅବିନାଶ, ତୁ କିଛି ମନେ କରିବୁନି । ମୁଁ ଏମିତି କିଛି କାମ କରିଛି, ଯେଉଁଥିରେ କି ତୋର କିଛି କ୍ଷତି ହେବ ।''

ଶଶାଙ୍କର ଏପରି ପିଲାଳିଆ କଥା ଶୁଣି ମୁଁ କହିଲି,'ଦେଖ ଶଶାଙ୍କ, ମୋର ଯେ କିଏ କ୍ଷତି ନକରୁଛି ସେପରି କହିହେବ ନାହିଁ । ବେଳେବେଳେ ଅନେକ ବନ୍ଧୁ ମୋର କ୍ଷତି କଲାବେଳେ ମଧ୍ୟ ମୋର ଲାଭ ହେଉଛି । ସେଥିପାଇଁ ମୁଁ ଏଣିକି ମୋ ଜୀବନରେ ଲାଭକ୍ଷତି ସଂପର୍କରେ କୌଣସି କଥାକୁ ନେଇ ବିଚାର କରୁନାହିଁ ।''

ମୋ କଥା ଶୁଣି ଶଶାଙ୍କ କହିଲା,'' ଖୁବ୍ ଭଲ କଥା । ତୁ ଖେଳୁଆଡ଼ ମନୋଭାବ ନେଇ କାମ କରୁଛୁ । ତେଣୁ କୌଣସି ମତେ ଲାଭ କ୍ଷତିର ହିସାବ ରଖୁନୁ ।।''

ଶଶାଙ୍କର କଥା ଶୁଣି ମୁଁ ଟିକିଏ ଚିହିଁକି ଉଠିଲି । ଶଶାଙ୍କ ମୋର କ'ଣ ଯେ କ୍ଷତି କରିଛି ତାହା ମୁଁ ମଧ୍ୟ ଜାଣିଥିଲି । ତେଣୁ ହସି ହସି କହିଲି,''ଶଶାଙ୍କ, ସେ କଥା ଛାଡ଼, ମୋତେ କହିଲୁ, ତୋର କମ୍ପ୍ୟୁଟରରେ କାହିଁକି ମୋର କୋର୍ଡ୍ ନମ୍ବର ନାହିଁ । ଯାହା ଫଳରେ ମୋ ସଂପର୍କୀୟ ସମସ୍ତ ଡାଟା ହଜିଯାଉଛି ।''

ମୋ କଥାରୁ କିଏ କ'ଣ ବୁଝନ୍ତୁ ବା ନବୁଝନ୍ତୁ କିନ୍ତୁ ଶଶାଙ୍କ ଠିକ୍ ବୁଝିପାରିଲା । ସେ ଯେ ମୋର ନିର୍ଦ୍ଦିଷ୍ଟ ଭାବେ କ'ଣ କ୍ଷତି କରୁଛି ସେତକ ମୋତେ ଅଛପା ନାହିଁ ବୋଲି ଜାଣି ନେଇ ଚିହିଁକି ଉଠିଲା । ଏକ ନିଷ୍ପ୍ରଭ ହସଟିଏ ହସି କହିଲା,''ମୁଁ କ'ଣ କରିବି କହିଲୁ । କମ୍ପ୍ୟୁଟରରେ ଥିବା ତୋ ନାମର କୋର୍ଡ୍ ନମ୍ବରରେ ଭାଇରସ୍ ଲାଗିଯାଇଛି । ତେଣୁ ତୋ ସଂପର୍କୀୟ କୌଣସି ଡାଟା ଆମର ହସ୍ତଗତ ହେଉନାହିଁ ।''

ଶଶାଙ୍କର କଥାଶୁଣି ଅତି ସ୍ୱାଭାବିକ ଭାବେ ମୁଁ କହିଲି,''ଶଶାଙ୍କ ତୋର ଯେମିତି ଏକ କମ୍ପ୍ୟୁଟର ଅଛି, ସେମିତି ଈଶ୍ୱରଙ୍କର ମଧ୍ୟ ଏକ କମ୍ପ୍ୟୁଟର ଅଛି । ତୋ କମ୍ପ୍ୟୁଟରରେ ସିନା ଭାଇରସ୍ ଲାଗିଯାଉଛି । ମାତ୍ର ଈଶ୍ୱରଙ୍କ କମ୍ପ୍ୟୁଟରରେ... ।''

ଆଉ ଅଧିକ ଶୁଣିବା ପାଇଁ ଶଶାଙ୍କର ଧୈର୍ଯ୍ୟ ନଥିଲା ।

ସେ ସେଠାରୁ ଝଡ଼ ବେଗରେ ଚାଲିଗଲା ।

ମୁଁ ପଛରୁ ଡାକ ଛାଡ଼ିଲି, ''ଶଶାଙ୍କ, ମୁଁ ଚା' ମଗାଇଛି । ତୁ ଏମିତି ପଳାଇ ଯାଉଛୁ କାହିଁକି ? ଅତି କମ୍‌ରେ ଚା' କପ୍‌ଟିଏ ଖାଇ ଯାଆ । '' ମୋ କଥା ଶଶାଙ୍କ କାନରେ ପଡ଼ିଲା କି ନାହିଁ ମୁଁ ଜାଣେନା । ମାତ୍ର ସେ ଆଉ ଫେରି ଆସିଲା ନାହିଁ ।



# ବୁଢ଼ାବାବୁ

ପ୍ରତିଦିନ ସକାଳେ ବୁଲିଗଲାବେଳେ ମୋର ଦେଖାହୁଏ ବୁଢ଼ାବାବୁଙ୍କ ସହିତ । ବହୁତ ଗପସପ ହୁଅନ୍ତି । ଢେଙ୍କାନାଳରୁ ଡିଙ୍କିଶାଳ ପର୍ଯ୍ୟନ୍ତ । କିପରି ସେ ଜୀବନରେ ସଂଗ୍ରାମ କରିଥିଲେ, ବଡ଼ ହେବା ପାଇଁ ଅନ୍ୟର ସମ୍ପତ୍ତିକୁ କଳେ ବଳେ କୌଶଳେ ଆଣି ନିଜର କରୁଥିଲେ, ସେ ସମ୍ପର୍କରେ ସେ ଅବିଚାରିତ ଭାବେ ଗପି ଚାଲନ୍ତି । ଆଉ ଭୁବନେଶ୍ୱରରେ ଚାକିରୀ କଲା ସମୟରେ କିପରି ବିଭିନ୍ନ ସ୍ଥାନରେ ଜାଗା ରଖିଥିଲେ ତା'ର ମଧ୍ୟ ଏକ ଟିକିନିକି ବିବରଣୀ ମୋତେ ଦିଅନ୍ତି ।

ବୁଢ଼ାବାବୁଙ୍କୁ ଦେଖିଲେ ମୋର ମନେହୁଏ ତାଙ୍କର ଦିନକୁ ଦିନ ଯେମିତି ଟଙ୍କା ପଇସାପ୍ରତି ଆସକ୍ତି ବଢ଼ି ଚାଲିଛି । ପାଟିରୁ ଦାନ୍ତ ଯେତିକି ଖସି ଆସୁଛି, ସେତିକି ଖାଦ୍ୟ ପଦାର୍ଥ ପ୍ରତି ଲାଳସା ବଢ଼ି ଚାଲିଛି, ଦେହର ଚର୍ମ ଦିନକୁ ଦିନ ଯେତିକି ଲୋଳିତ ହେଉଛି, ଚର୍ମଗତ ବୈଭବରେ ସେ ସେମିତି ନିଜକୁ ସଜାଇ ଚାଲିଛନ୍ତି ।

ଖାଲି ଘର ସଂସାର, ଜମିବାଡ଼ି, ହାନୀଲାଭ କଥା ବାଢ଼ାବାବୁଙ୍କ ମୁହଁରୁ ଶୁଣି ଶୁଣି କ୍ରମଶଃ ମୋତେ ବିରକ୍ତି ଲାଗିଲା । ସୌଜନ୍ୟ ଓ ବୟସ ଦୃଷ୍ଟିରୁ ମୁଁ ବୁଢ଼ାବାବୁଙ୍କୁ କିଛି ନକହିଲେ ମଧ୍ୟ ତାଙ୍କର ସମସ୍ତ କଥାରେ ହଁ ମାରିଲି ନାହିଁ । ଦିନେ ସେ ତାଙ୍କର ମତ ପିଲାଛୁଆଙ୍କ ଉପରେ ଲଦି ଦେବା କଥା ମୋତେ କହିଲେ । ମୁଁ ତାଙ୍କୁ କହିଲି, ''ଦେଖନ୍ତୁ, ଆପଣଙ୍କ ପିଲାମାନେ ବଡ଼ ହୋଇ ଗଲେଣି । ସେମାନଙ୍କର ବିଚାର କରିବାର ଶକ୍ତି ଆସି ଗଲାଣି । ସେମାନଙ୍କୁ ସେମାନଙ୍କ ନିଜସ୍ୱ ଚିନ୍ତାଧାରାରେ ଆଗେଇବାକୁ ଦିଅନ୍ତୁ । ଯଦି ଦରକାର ପଡ଼େ ଆବଶ୍ୟକ ସ୍ଥଳେ ପରାମର୍ଶ ଦିଅନ୍ତୁ ।

ବୁଢ଼ାବାବୁଙ୍କୁ ମୋ କଥା ଭଲ ଲାଗିଲା ନାହିଁ । ସେ ମୋ ଉପରେ ଚିହିଁକି ଉଠି କହିଲେ, 'ଆଚ୍ଛା ଭଲ କଥା ଆପଣ କହୁଛନ୍ତି । ମୋ ପିଲାଙ୍କୁ ନିଶ୍ଚିତ ଭାବେ ମୋ କଥା ମାନି ଚଳିବାକୁ ପଡ଼ିବ । ନଚେତ୍ ସେମାନଙ୍କୁ ମୁଁ ମୋ ସମ୍ପତ୍ତିରୁ ବଞ୍ଚିତ କରିବି ।''

ମୁଁ ବୁଢ଼ାବାବୁଙ୍କ ଘରୋଇ ପରିସ୍ଥିତି ସହିତ ଅଳ୍ପ ବହୁତ ପରିଚିତ ଥିଲି । ବୁଢ଼ା ବୟସରେ ପିଲାଛୁଆଙ୍କୁ ସେମାନଙ୍କ ସମ୍ପତ୍ତିରୁ ବଞ୍ଚିତ କରିବାର କଥା ମୋ କାନକୁ

ଭଲ ଶୁଭିଲା ନାହିଁ । ମୁଁ କହିଲି, ''ପିଲାଛୁଆ ଆପଣଙ୍କର । ଆପଣ ସେମାନଙ୍କୁ ସମ୍ପତ୍ତିରୁ ବଞ୍ଚିତ କରିବେ କି ଆପଣଙ୍କ ସଞ୍ଚିତ ପୁଣ୍ୟରୁ ମଣିଷ ପରି ମଣିଷ କରି ଗଢ଼ିବେ, ସେ ବିଚାର ଆପଣଙ୍କର । ଆପଣ କେବଳ ମୋତେ ପଚାରିବାରୁ ମୁଁ ଆପଣଙ୍କୁ ମୋ ବୁଦ୍ଧି ଅନୁସାରେ କଥା କେଇପଦ କହିଲି । ଯଦି ଆପଣଙ୍କ ମନରେ ଦୁଃଖ ଦେଇଥାଏ, ତେବେ ମୋତେ କ୍ଷମା ଦେବେ ।''

ବୁଢ଼ାବାବୁ ମୋ କଥା ଶୁଣି ଖୁସି ହୋଇଗଲେ । ବୋଧେହୁଏ ମୋର କଥା ତାଙ୍କର ମନ ଛୁଇଁଲା । ସେ କହିଲେ, ''ନା, ନା, ଆପଣଙ୍କ କଥାକୁ ମୁଁ କିଛି ଭାବିନାହିଁ । ବଅସ ଅଧିକା ହେବାରୁ ବେଳେବେଳେ ବିରକ୍ତିରେ କ'ଣ ନାହିଁ କ'ଣ କହି ଦେଉଛି । ତା'ପରେ ବୁଢ଼ାବାବୁ ମୋତେ ପଚାରିଲେ-ଆପଣ, ଜାତକ ଉପରେ ବିଶ୍ୱାସ କରନ୍ତି ?''

ମୁଁ କହିଲି : ନା

ସେପଚାରିଲେ- କାହିଁକି ?

ମୁଁ କହିଲି,''ମୋର ସାନପୁଅ ଜନ୍ମ ହେଲା ବେଳେ ମୁଁ ଜଣେ ଜ୍ୟୋତିଷଙ୍କ ଘରେ ରହୁଥିଲି । ସେ ଜବରଦସ୍ତ ତା'ର ଜାତକ ତିଆରି କରିଦେଲେ । ସେହିପରି ଜ୍ୟୋତିଷ ଶାସ୍ତ୍ର ଜାଣିଥିବା ମୋର ଜଣେ ବନ୍ଧୁ ମଧ୍ୟ ତା'ପାଇଁ ଗୋଟିଏ ଜାତକ ତିଆରି କଲେ ।''

''ତା'ପରେ କ'ଣ ହେଲା ? ବୁଢ଼ାବାବୁ ପଚାରିଲେ ।

ମୁଁ କହିଲି,''ପୁଅ ଜନ୍ମ ହୋଇଥିଲା ଜାନୁଆରୀ ମାସରେ । ଜୁନ୍ ମାସରେ ମୁଁ ଗାଁକୁ ଆସିଲି । ଘରେ ଗାଁ ଅବଧାନେ ବୋଉକୁ କହିଲେ ଜାତକଟିଏ ତିଆରି କରିବା ପାଇଁ । ଅବଧାନଙ୍କ କଥାଶୁଣି ବୋଉ କହିଲା ନାତିର ଜାତକ ସମ୍ବଲପୁରରେ ହୋଇଛି । ଆଉ ଦରକାର ନାହିଁ । ବୋଉର କଥା ଶୁଣି ଅବଧାନେ କହିଲେ, ''ମୁଁ ଜାତକ ନକଲେ ମୋ ପାଉଣାବୁଡ଼ିଯିବ । ମୁଁ ହେଲି ଗ୍ରାମ ଦେବତା ଭଳି । ମୋତେ ଛାଡ଼ି ତୁମ ନାତିର ଜାତକ ହୋଇ ନପାରେ ।'' ଅବଧାନଙ୍କ କଥାଶୁଣି ବୋଉ ରାଜି ହୋଇଗଲା । କହିଲା,''ହଉ, ହଉ, ତୁମେ ଜାତକଟିଏ କର । ମୁଁ କାହିଁକି ତୁମ ପାଉଣା ବୁଡ଼ାଇବି ।'' ଅବଧାନେ ପୁଅର ଜନ୍ମ ସମୟ ସ୍ଥାନ ଆଦି ମୋଠାରୁ ଟିପି ନେଲେ । ସାତଦିନ ପରେ ଜାତକ ଆଣି ଆମ ଘରେ ପହଞ୍ଚିଲେ । ମୁଁ ଆଗ୍ରହର ସହିତ ଜାତକଟିକୁ ପୂର୍ବର ଦୁଇଟି ଜାତକ ସହିତ ମିଳାଇଲି। ପ୍ରତି ଜାତକରେ ଥିବା ଜନ୍ମ କୁଣ୍ଡଳୀ ଭିନ୍ନ ଭିନ୍ନ, ଯଦିଓ ଜନ୍ମସ୍ଥାନ ଓ ସମୟ ସମାନ ।''

ବୁଢ଼ାବାବୁ ଟିକିଏ ଛେପ ଢୋକି ମୋତେ କହିଲେ,''ସେପରି ହେବା କଥା ନୁହଁ । କିପରି ହେଲା ?''

ମୁଁ କହିଲି, ‘‘ସେ କଥା ମୁଁ ଜାଣେ ନାହିଁ । କିନ୍ତୁ ମୋ ଦୃଷ୍ଟିରେ ସେ ତିନିଜଣ ଜ୍ୟୋତିଷ ବିଶେଷଜ୍ଞ ନିଜ ନିଜ ସ୍ଥାନରେ । ସେମାନଙ୍କର ଖାତିର ମଧ୍ୟ ଯଥେଷ୍ଟ । ମୁଁ ସେମାନଙ୍କ ଜ୍ଞାନ ଓ ଗାରିମାକୁ ସନ୍ଦେହ ନ କଲେ ମଧ୍ୟ ଜାତକ ତିନୋଟିର ସିଦ୍ଧତାକୁ ସହଜରେ ମାନି ନେଇ ପାରିଲି ନାହିଁ । ତେଣୁ ମୋ ମନରୁ ତଥାକଥିତ ଜାତକ ଉପରେ ବିଶ୍ୱାସ ରହିଲା ନାହିଁ ।’’

ବୁଢ଼ାବାବୁ ମୋ କଥା ଶୁଣି କହିଲେ, ‘‘ବିଶ୍ୱାସ ଓ ଅବିଶ୍ୱାସ ମଣିଷର ମନର ମୂଳରେ ରହିଛି । କିନ୍ତୁ ମୋ ମନରେ ଜାତକ ଉପରେ ପ୍ରଗାଢ଼ ବିଶ୍ୱାସ ରହିଛି । ତେଣୁ ମୋ ପୁଅ ଲାଗି ଯେତେ କନ୍ୟା ପାତ୍ର ଆସୁଛି, ମୁଁ କନ୍ୟାପାତ୍ର ଦେଖିବା ଆଗରୁ ଜାତକ ଦେଖୁଛି । ଏମିତି ଶହେ ସରିକି ଜାତକ ଦେଖା ସରିଲାଣି । କେଉଁଠି ନାଗନାଡ଼ି ପଡୁଛି ତ କେଉଁଠି ନର ରାକ୍ଷସ ପଡୁଛି । ଯେଉଁଠି ଭଲ ଜାତକ ପଡୁଛି ସେଠି କନ୍ୟାପାତ୍ର ଆମ ମନକୁ ଆସୁନି ।’’

ବୁଢ଼ାବାବୁଙ୍କ କଥା ଉପରେ କୌଣସି କମେଣ୍ଟ ଦେବା ଯୁକ୍ତି ସଙ୍ଗତ ହେବନାହିଁ ବୋଲି ମୁଁ ମନେ କଲି । କହିଲି, ‘‘ମନ ଯାହା ଡାକୁଛି ତାହା କରନ୍ତୁ । ଦେଖିବେ ସବୁ ସମାଧାନ ହୋଇଯିବ ।’’

ସେଦିନ ସକାଳବୁଲା ସେତିକିରେ ସରିଲା । ମୁଁ ତା’ ପରଦିନ କୌଣସି କାମରେ ଦିଲ୍ଲୀ ଚାଲିଗଲି । ଦିଲ୍ଲୀରୁ ଫେରି ଘରେ ଦେଖିଲି ନିମନ୍ତ୍ରଣ ପତ୍ରଟିଏ ପଡ଼ିଛି । ବୁଢ଼ାବାବୁ ଆସିଥିଲେ । ମୁଁ ଦିଲ୍ଲୀ ଯାଇଥିବା ଶୁଣି କୁଆଡ଼େ ପିଲାମାନଙ୍କ ଆଗରେ ଦୁଃଖ ପ୍ରକାଶ କରିଥିଲେ । ଆଉ ନିମନ୍ତ୍ରଣ ପତ୍ରଟି ଦେଇ ଚାଲିଯାଇଥିଲେ ।

ଫେରିଲାପରେ ପ୍ରାତଃ ଭ୍ରମଣ ସମୟରେ ମୋର ବୁଢ଼ାବାବୁଙ୍କସହିତ ଦେଖାହେଲା । ସେ ମୋତେ ଦେଖି ଭାରି ଖୁସି ହେଲେ । କହିଲେ, ‘‘ଭଲରେ ଭଲରେ ବାହାଘର ହେଲା । ଜାତକ ମଧ୍ୟ ଭଲ ପଡ଼ିଲା ।’’

ମୁଁ କହିଲି, ‘‘ଏଣିକି ଆପଣ ନାତି କିମ୍ବା ନାତୁଣିଟିଏ ଖେଳାଇବା ପାଇଁ ପ୍ରସ୍ତୁତ ରହନ୍ତୁ ?’’

ସତକୁ ସତ ବର୍ଷକ ପରେ ବୁଢ଼ାବାବୁଙ୍କର ନାତିଟିଏ ହେଲା । ନାତି ହେଲାପରଠାରୁ ବୁଢ଼ାବାବୁଙ୍କୁ ଆଉ ପ୍ରାତଃ ଭ୍ରମଣରେ ମୁଁ ବେଶୀ ଦେଖିଲି ନାହିଁ । ଦିନେ ସକାଳୁ କେନ୍‌ଟିଏ ହାତରେ ଝୁଲାଇ ଝୁଲାଇ ବୁଢ଼ାବାବୁ ରାସ୍ତାରେ ଚାଲୁ ଚାଲୁ ମୋର ଭେଟ ପଡ଼ିଗଲେ । ମୁଁ କହିଲି, ‘‘ଆପଣଙ୍କୁ ମୁଁ ବହୁତ ଦିନରୁ ଦେଖିନାହିଁ । ଚାଲନ୍ତୁ, ପାଖ ଦୋକାନରେ ସାଙ୍ଗ ହୋଇ ଚା’ କପେ କପେ ଖାଇ ନେବା ।’’

ବୁଢ଼ାବାବୁ ମୋତେ କହିଲେ, ''ବେଳ ନାହିଁ । ନାତିଟୋକା ପାଇଁ କ୍ଷୀର ଆଣିବି । ସେ କ'ଣ ମୋତେ ଘରୁ ଘଡ଼ିଏ ଛାଡ଼ୁଛି ?''

ବୁଢ଼ାବାବୁଙ୍କ ଉତ୍ତର ଶୁଣି ମୁଁ କହିଲି, ''ଆପଣ ତ ସବୁଦିନେ ନାତି ସେବା କରୁଛନ୍ତି । ଆଜି ଟିକିଏ ଡେରି ହେଉ ।''

ବୁଢ଼ା ବାବୁ ସଙ୍ଗେ ସଙ୍ଗେ କହିଲେ, ''କି କଥା ଆପଣ କହୁଛନ୍ତି ।ନାତି ପାଇଁ କ୍ଷୀର ଆଣିବା ବଡ଼ ନା, ଆପଣଙ୍କ ସହିତ ଚା' କପେ ଖାଇବା ବଡ଼ ।''

ମୁଁ ହସି ହସି କହିଲି, ''ଆପଣ ଯାହା ବଡ଼ ଭାବୁଛନ୍ତି କରନ୍ତୁ ।''

ଏହା ପରେ ପରେ ବୁଢ଼ାବାବୁ କ୍ଷୀର କେନ୍‌ଟିକୁ ହାତରେ ହଲେଇ ହଲେଇ ସେଠାରୁ ପଳାଇଗଲେ ।

ମୋର ସକାଳ ବୁଲିବା ସେଦିନ ସେଇଠୁ ସରିଲା । ମୁଁ ସିଧା ସିଧା ଘରକୁ ଚାଲି ଆସିଲି ।

ନାତି ସେବା କରିବାରେ ଯେ ମଣିଷ କେତେ ଖୁସିହୁଏ ସେଦିନ ମୁଁ ବୁଢ଼ାବାବୁଙ୍କ ଚାଲିରୁ ଜାଣିଲି । ସତେ ଯେମିତି ନାତିଛଡ଼ା ଆଉ କୌଣସି କଥାରେ ତାଙ୍କର ମନ ନାହିଁ ।

ଏମିତି ଗୋଟିଏ ବର୍ଷ ନାତି ସେବାରେ ବୁଢ଼ାବାବୁଙ୍କର ଚାଲିଗଲା । ତା' ପରେ ତାଙ୍କୁ ଦୀର୍ଘଦିନ ପାଇଁ ମୁଁ ଆଉ ମୋର ପ୍ରାତଃ ଭ୍ରମଣ ରାସ୍ତାରେ ବୁଢ଼ାବାବୁଙ୍କୁ ଦେଖିଲି ନାହିଁ ଜାଣିଥିବା ଆଉ ଜଣେ ବୁଢ଼ାଙ୍କ ସହିତ ମୋର ସାକ୍ଷାତ ହେଲା । ତାଙ୍କୁ ପଚାରିଲି, ''ଆଜିକାଲି କାହିଁକି ବୁଢ଼ାବାବୁ ଦେଖାଯାଉ ନାହାଁନ୍ତି ? କ'ଣ ଦେହ ପା' ତାଙ୍କର ଭଲ ଅଛିତ ?''

ସେ ବୁଢ଼ାଜଣକ ମୋ ଆଡ଼କୁ ବଲ୍‌ବଲ୍ ହୋଇ ଚାହିଁଲେ । କହିଲେ, ''ଆପଣ କ'ଣ ଜାଣି ନାହାଁନ୍ତି ?''

ମୁଁ କହିଲି, ''କେଉଁ କଥା ?''

ସେ କହିଲେ, ''ବୁଢ଼ା ତାଙ୍କ ଘରୁ ନାତି ଓ ବୋହୂକୁ ବାହାର କରି ଦେଇଛନ୍ତି ?''

''ମାନେ ?'' ମୁଁ ଆଶ୍ଚର୍ଯ୍ୟର ସହିତ ପଚାରିଲି ।

ସେ କହିଲେ, ''ଖାଲି ସେତିକି ନୁହେଁ ପୁଅକୁ ମତାଇ ଏକ ଡାଇଭୋର୍ସ କେସ୍ ମଧ୍ୟ କରିଛନ୍ତି ?''

ମୁଁ ପଚାରିଲି "କାହିଁକି ?"

ସେ କହିଲେ,"ଆପଣ କ'ଣ ବୁଢ଼ାର ଏପରି କାମରୁ କିଛି ବୁଝି ପାରୁନାହାଁନ୍ତି ?"

ମୁଁ କହିଲି,"ମୁଁ କେମିତି ବୁଝିବି ! ଦୀର୍ଘ ଦୁଇବର୍ଷ କାଳ ଆମମାନଙ୍କୁ ପରକରି ନାତି ପାଇଁ କେବଳ କ୍ଷୀର ଆଣିବା ଲୋକ ଓ ନାତି ନାତି ଜପୁଥିବା ଲୋକ ନାତିକୁ ଘରୁ ବିଦା କରିଦେବ; ଭଲ ଜାତକ ମେଳକରି ଆଣିଥିବା ବୋହୂକୁ ଘରୁତଡ଼ିଦେଇ ତା' ନାମରେ ଅଦାଲତରେ ଛାଡ଼ପତ୍ର ଲାଗି ପୁଣି କେସ୍ କରିବ !"

ମୋ କଥା ଶୁଣି ବୁଢ଼ା ଜଣକ କହିଲେ, ବୋହୂ ଭଲ ଲୋକ । ବୁଢ଼ା ଟିକିଏ ଧନ ଲୋଭୀ । ବୁଢ଼ୀ ମଧ୍ୟ ।"

ମୁଁ କହିଲି, "ମୁଁ ସେ ପର୍ଯ୍ୟନ୍ତ ଭାବୁ ନାହିଁ । ବୁଝି ପାରୁନାହିଁ ଦୀର୍ଘ ଦୁଇବର୍ଷକାଳ ନାତି ସେବା କରୁଥିବା ଲୋକ, ନାତିର ଚୁଟି ଟଣାରୁ ଆନନ୍ଦ ପାଇଥିବା ବ୍ୟକ୍ତି କିପରି ନାତିକୁ ପର କରି ଦେବ ।"

ଏହା କହି ସେଦିନ ମୁଁ ଘରକୁ ଫେରି ଆସିଲି । ମନଟା ମୋର ଭାରାକ୍ରାନ୍ତ ହୋଇଗଲା । ମୋର ମନେ ପଡିଲା କଲେଜ ଜୀବନରେ ପଢ଼ିଥିବା କବିଙ୍କର ସେହିକଥା- ଜୀବନ କି ଖାଲି ନିରାଶାର ବାଲି ମରୁ ମରିଚିକା ସେନେହ ପ୍ରୀତି !

ପରଦିନ ବୁଢ଼ାବାବୁଙ୍କ ସହିତ ସକାଳରେ ବୁଲୁଥିବା ସେହି ରାଜରାସ୍ତା ଉପରେ ଦେଖାହେଲା । ସେଦିନ ବୁଢ଼ାବାବୁଙ୍କ ମନରେ ଆଉ ନାତିପାଇଁ କ୍ଷୀର ଆଣିବାର ବ୍ୟସ୍ତତା ନଥିଲା କି ଚଳ ଚଞ୍ଚଳତା ନଥିଲା !

ଔପଚାରିକ ଦୃଷ୍ଟିକୋଣରୁ ଗତାନୁଗତିକ ଭାବେ ମୁଁ ଟିକିଏ ହସି ଦେଲି । ଆଉ ଇଛାନଥିଲା । ତାଙ୍କ ସହିତ ଗପସପ ହେବ ପାଇଁ । ସେ ମୋତେ ତାଙ୍କୁ ଅତିକ୍ରମ କରି ଯିବାର ଦେଖି କହିଲେ, "ଆଜି ଟିକିଏ ଦୁଃଖ ସୁଖ ହେବା ନାହିଁ ।"

ମୁଁ କହିଲି, "ଜୀବନରେ ସୁଖ କ'ଣ ମୁଁ ଜାଣେନାହିଁ । ଦୁଃଖକୁ କିପରି ଆପଣେଇ ନେବାକୁ ହୁଏ ତାହା ମଧ୍ୟ ଶିକ୍ଷା କରିନାହିଁ । ତେଣୁ ଆପଣଙ୍କ ସହିତ କି ଦୁଃଖ ସୁଖ ହେବି ?"

ବୁଢ଼ାବାବୁ କହିଲେ, 'ମୁଁ ଆପଣଙ୍କ ଦୁଃଖସୁଖ କଥା ଉଠାଇବାକୁ ଚାହେ ନାହିଁ । ମୋ ଘରତ ଭାସିଗଲା !"

କିଛି ନଜାଣିଲା ପରି ପଚାରିଲି, ‘‘କ’ଣ ହେଲା ?’’

ବୁଢ଼ା ମୁହଁ ଶୁଖାଇ କହିଲେ କି ଦୁର୍ଯୋଗରେ ବୋହୂ କରିଥିଲି କେଜାଣି, ମୋତେ ଆଜି କାଠଗଡାକୁ ଯିବାକୁ ପଡିଲା ?’’

ମୁଁ ଧୈର୍ଯ୍ୟର ସହିତ ପଚାରିଲି, ‘‘ବୋହୂ ପାଇଁ ସିନା କାଠଗଡା ଗଲେ । କିନ୍ତୁ ନାତି ଆପଣଙ୍କର କ’ଣ ଦୋଷ କରିଥିଲା ?’’

ସଙ୍ଗେ ସଙ୍ଗେ ବୁଢ଼ାବାବୁ ଚିହିଁକି ଉଠି ଉତ୍ତର ଦେଲେ, ‘‘ନାତି, କେଉଁ ନାତି, ସେ ନାତି କ’ଣ ମୋ ବଂଶର । ପୁଣି ଦେଖୁ ନାହାଁନ୍ତି ବୋହୂ ବାପ ଘରେ, ପୁଣି ତାର କୋଳରେ ଗୋଟିଏ ଛୁଆ ।’’

‘ମାନେ ?’ ନବୁଝି ପାରି ମୁଁ ପଚାରିଲି ।

ବୁଢ଼ାବାବୁ କହିଲେ, ‘‘ ଯେଉଁ ଓକିଲ ଜଣକ ବୋହୂପାଇଁ ଏ କେସ୍ ଲଢୁଛନ୍ତି ଏପିଲାଟି ତାଙ୍କର । ସେଥିରେ ପୁଣି ଆମେ ଖୋରାକ ପୋଷାକ ଦେବୁ । ଏ ପୁଣି କେଉଁ ନ୍ୟାୟ ?’’

ମୁଁ କହିଲି, ‘‘ଆପଣଙ୍କ କଥା ଉପରେ କୌଣସି ମତାମତ ଦେବାକୁ ମୁଁ ସମୀଚୀନ ମନେକରୁନି । ନ୍ୟାୟାଳୟରେ କେସ୍ ଅଛି । ମୋର ଆଶା ଆପଣ ନ୍ୟାୟ ପାଇବେ ।’’

ବୁଢ଼ାବାବୁ କହିଲେ, ‘‘ନିଶ୍ଚିତ ଭାବେ ନ୍ୟାୟ ଆମେ ସପକ୍ଷରେ ଯିବ । ଆଉ ଗୋଟିଏ ଦୁଇଟି ତାରିଖରେ କେସ୍ ଫାଇନାଲାଇଜ ହୋଇଯିବ ।’’

କେସର୍ ବିଚାର କେଉଁ ଆଡେ ଯିବ ତାହା ଜାଣିବା ପାଇଁ ମନରେ କେଜାଣି କାହିଁକି ମୋର ଅହେତୁକ ଆଗ୍ରହ ଦେଖାଦେଲା । କେସ୍ ପଡିବା ପରଦିନ ମୋର ବୁଢ଼ାବାବୁଙ୍କ ସହିତ ଦେଖାହେଲା । ପଚାରିଲି, ‘‘କେସ୍ କ’ଣ ବିଚାର ହୋଇଗଲା ?’’

ବୁଢ଼ାବାବୁ କହିଲେ, ‘‘ ବିଚାର ହେବ କ’ଣ ? ଆମ ଟୋକା ସବୁ ବିଗିଡେଇ ଦେଲା । ଯେତେବେଳେ ହାକିମ ପଚାରିଲେ, ତୁମେ ସ୍ତ୍ରୀକୁ ନେବ, ନା ଡାଇଭୋର୍ସ ସପକ୍ଷରେ ଅନୁମତି ଦିଆଯିବ, ସେତେବେଳେ ସେ କହିଲା, ‘‘ମୋ ପିଲାଛୁଆଙ୍କୁ ମୁଁ ନେବି ।’’

ମୁଁ ନୀରବ ରହିଲି ।

ବୁଢ଼ାବାବୁ ପୁଣି କହି ଚାଲିଲେ, ''ଗଲା ସବୁ ବିଗିଡିଗଲା । ଆଉ କ'ଣ କେସ୍‌କୁ ଆମ ସପକ୍ଷରେ ବାଗେଇ ହେଉଚି ?''

ମୁଁ ଆଉ ବୁଢ଼ାବାବୁଙ୍କ ସହିତ ବେଶୀ ନଗପି ସେଠାରୁ ଚାଲି ଆସିଲି ।

ଧନସମ୍ପତ୍ତି ସମ୍ପନ୍ନ ବିଶାଳ ବପୁବନ୍ତ ବୁଢ଼ାବାବୁ ଯେ ଧନ ସମ୍ପତ୍ତିରୁ ନିରୀହ ପୁଅକୁ ବଞ୍ଚିତ କରିବାର ଧମକ ଦେଇ ଏପରି କାଣ୍ଡ ଅର୍ଥ ଲୋଭରେ କରିଛନ୍ତି ତାହା ମୋତେ ବୁଝିବାକୁ ଅଛପା ରହିଲା ନାହିଁ । ଦୁର୍ବଳ ଅବଳାକୁ ଆଇନ୍‌ଗତ ସହାୟତା ଯୋଗାଇ ଦେଉଥିବା ଓକିଲଙ୍କ ନାମରେ କାଳିମା ବୋଳିବାକୁ ଯେ ସେ ଶ୍ରେୟସ୍କର ମଣିଛନ୍ତି ତାହା ମଧ୍ୟ ମୋର ବୋଧଗମ୍ୟ ଶକ୍ତିର ବାହାରେ ରହିଲା ନାହିଁ । କିନ୍ତୁ ବୟସ ଦୃଷ୍ଟିକୋଣରୁ ମୁଁ ତାଙ୍କୁ କିଛି କହି ପାରି ନଥିଲି ।

ପରିସ୍ଥିତିରେ ପଡି ମୋର ପ୍ରାତଃଭ୍ରମଣ ବନ୍ଦ ହୋଇଗଲା । ଅନ୍ୟମାନଙ୍କସହିତ ଭ୍ରମଣଭିତ୍ତିକ ସାକ୍ଷାତ ଓ ଆଲୋଚନାରେ ଜୁଆର ଓ ଭଟ୍ଟା ପଡିଲା ।

ଦିନେ ସନ୍ଧ୍ୟାବେଳେ ମୋର ଜଣେ ବୁଢ଼ା ଭଦ୍ର ଲୋକଙ୍କ ସହିତ ସାକ୍ଷାତ ହେଲା ।

ସେ ମୋତେ ଶ୍ରଦ୍ଧାର ସହିତ ପଚାରିଲେ - ଆପଣଙ୍କର କ'ଣ ଭୁବନେଶ୍ୱରରୁ ବଦଳି ହୋଇଗଲା ?

ମୁଁ କହିଲି - ନା ।

ସେ ମୋତେ ପୁଣି ପଚାରିଲେ, ''ଆପଣ କାହିଁକି ବୁଲି ଆସୁନାହାଁନ୍ତି ?

ମୁଁ କହିଲି, ''ମୁଁ ପ୍ରତିଦିନ ସକାଳେ ପ୍ରାୟ କାର୍ଯ୍ୟବ୍ୟସ୍ତ ରହିଲି । ତେଣୁ ଆସି ପାରିଲି ନାହିଁ ।''

ସେ ପୁଣି କହିଲେ,''ଆପଣଙ୍କୁ ବୁଢ଼ାବାବୁ ଭାରି ଖୋଜୁଛନ୍ତି । ସବୁବେଳେ ପଚାରୁଛନ୍ତି ଆପଣ ଭୁବନେଶ୍ୱର ଛାଡି ଗଲେଣି କି ନାହିଁ ?''

ମୁଁ ପଚାରିଲି, ''ବୁଢ଼ା ବାବୁଙ୍କର କ'ଣ ମୋ ସହିତ କିଛି କାମ ଥିଲା ?''

ସେ କହିଲେ , '' ନା, ମୁଁ ତାହା କହି ପାରିବି ନାହିଁ । ହେଲେ ଗୋଟିଏ ଖବର ଅଛି ।''

'କ'ଣ ?' ମୁଁ ପଚାରିଲି ।

ସେ କହିଲେ, ''ବୁଢ଼ାବାବୁଙ୍କ ବୋହୂ ତାଙ୍କ ଘରକୁ ଆସିଲେଣି ।''

ଘରର କୂଳବଧୂ ଘରକୁ ଫେରି ଆସିବା କଥାଶୁଣି ମୋତେ ଖୁବ୍ ଖୁସି ଲାଗିଲା । ଯୋଗକୁ ତା' ପରଦିନ ସକାଳେ ମୋର ବୁଢ଼ାବାବୁଙ୍କ ସହିତ ସାକ୍ଷାତ ହେଲା । ସେ ମୋତେ ଦେଖି ଖୁବ୍ ଖୁସି ହୋଇଗଲେ ।

ମୁଁ ତାଙ୍କୁ କହିଲି, ''ମୁଁ ଭାରି ଖୁସି ଯେ ଆପଣଙ୍କ କେସ୍ ସମାଧାନ ହୋଇଯାଇଛି । ଆପଣଙ୍କ ବୋହୂ ଓ ନାତି ଘରକୁ ଫେରି ଆସିଛନ୍ତି । ଆପଣ ଯଥାର୍ଥ ନ୍ୟାୟ ପାଇଛନ୍ତି ।''

ମୋ କଥା ଶୁଣି ବୁଢ଼ାବାବୁଙ୍କ ମୁହଁ ଶୁଖି ଆସିଲା । ସେ କହିଲେ, ''ଯାହା ହେବାର ଥିଲା ହୋଇଗଲା । ସେ ବିଷୟରେ ଆଉ କ'ଣ କହିବି ?''

ନିଜ ବୋହୂର ନିଜେ ବଦନାମି କରିଥିବା ବୁଢ଼ାବାବୁ ମୋ ଆଗରେ ଯେ ଛିଡାହେବା ପାଇଁ ଅପ୍ରତିଭ ମନେ କରୁଛନ୍ତି ମୁଁ ତାଙ୍କର ଆବଭାବରୁ ଅନୁଭବ କଲି । ତେଣୁ କହିଲି, ''ଯାହା ହେବାର ଥିଲା ହେଲା । ଆପଣ ସେ ସବୁ ଭୁଲି ଯାଆନ୍ତୁ । ମୁଁ ସବୁଲୋକଙ୍କ ମୁହଁରୁ ଶୁଣିଛି ଆପଣଙ୍କ ବୋହୂର ଚରିତ୍ର ଖୁବ୍ ଭଲ ।''

ଶୁଖି ଆସିଥିବା ବୁଢ଼ାବାବୁଙ୍କ ମୁଖମଣ୍ଡଳଟି ନୂତନ ଜୀବନ ପାଇଲା ଭଳି ଉଜ୍ଜ୍ୱଳ ହୋଇ ଉଠିଲା । ବୁଢ଼ାବାବୁ ହସି ହସି କହିଲେ'' କ'ଣ ସବୁଲୋକ କହୁଛନ୍ତି ମୋ ବୋହୂର ଚରିତ୍ର ଭଲ ବୋଲି ।''

ମୁଁ କିଛି ବାଛବିଚାର ନକରି କହିଲି, ''ହଁ, ସମସ୍ତେ କହୁଛନ୍ତି । କେବଳ ଆପଣ ଯାହା କହୁନଥିଲେ ।''

ବୁଢ଼ାବାବୁ କହିଲେ, ''ହଁ, ସମସ୍ତେ ସେୟା କୁହନ୍ତୁ । ମୁଁ ତାହାହିଁ ଚାହେ....।''

ମୁଁ କହିଲି, ''କେବଳ ଆପଣ ତାହା ଚାହୁନାହାନ୍ତି, ମୁଁ ମଧ ସେୟା ଚାହେ, ଆମ ସମାଜ ମଧ ଆମ ସମସ୍ତଙ୍କ ଠାରୁ ତାହା ଆଶା କରିଥାଏ । ବେଳେବେଳେ ଆମେ ଯାହା ବାଟହୁଡି ଅବାଟରେ ଯାଇଥାଉ ।''

ବୁଢ଼ାବାବୁ ମୋ କଥାଶୁଣି କହିଲେ, ''ଛାଡ ହୋ ସେ କଥା, ବଡ ବିପଦରୁ ମୁଁ ରକ୍ଷା ପାଇଗଲି । ନ୍ୟାୟାଳୟର ନ୍ୟାୟ ଯୋଗୁଁ ମୋ ପିଲାଛୁଆଙ୍କ ପରିବାର ବଞ୍ଚିଗଲା । ମୁଁ ମଧ ବଞ୍ଚିଗଲି ।''

ମୁଁ ହସି ହସି କହିଲି, ''ଆପଣ ସେମିତି ଶତାୟୁର ଗୌରବ ନେଇ ଆମ ଗହଣରେ ବଞ୍ଚି ରୁହନ୍ତୁ । ଆମେ ତାହାହିଁ ଚାହୁଁ ।''

ମୋ କଥା ଶୁଣି ବୁଢ଼ାବାବୁ ଏକ ମନ ଖୋଲା ହସ ହସିଲେ ।

***

# ପ୍ରାୟଶ୍ଚିତ

**ସେ**ଦିନ ସକାଳୁ ସକାଳୁ ନଟଅଜାଙ୍କ କଥା ଖୁବ୍ ମନେ ପଡିଲା । ନଟଅଜା କେବଳ ମୋର ଅଜା ନଥିଲେ । ଆମ ଗାଁର ସମସ୍ତଙ୍କର ଅଜା ଥିଲେ । ପୁଅ ଅଜା ଡାକୁଥିଲା ବେଳେ ବାପା ବି ଅଜା ଡାକୁଥିଲା । ଆଉ ଆଖପାଖ ପାଞ୍ଚସାତ ଗାଁରେ ବି ସେ ପରିଚିତ ଥିଲେ ନଟଅଜା ରୂପେ । ସମସ୍ତଙ୍କର ପ୍ରିୟ ନଟଅଜା ।

ନଟଅଜା ! ସରଳ ନିଷ୍ପାପ ମଣିଷଟିଏ । ଦାରିଦ୍ର୍ୟର କଷାଘାତରେ ଏକ ବଡ ପରିବାରର ବୋଝ ବୋହୁଥିବା ଏହି ନଟଅଜାଙ୍କ ମୁହଁ କେବେ ମଳିନ ପଡିଥିବାର ମୁଁ ଦେଖି ନଥିଲି । ସବୁବେଳେ ହସହସ, କେତେବେଳେ କେମିତି ଦେଖିଲେ ପଚାରି ଦିଅନ୍ତି, 'କ'ଣ ନାତି, ଆଜିକାଲି ସବୁ ଭଲ ତ !''

ନଟଅଜାଙ୍କୁ ଦେଖିଲା ବେଳେ ମନ ଯେତେ ଖରାପଥିଲେ ମଧ୍ୟ ପାଟିରୁ ଆପେ ଆପେ ବାହାରି ଆସେ ''ହଁ ଅଜା, ସବୁ ଭଲ । ଆଉ ଆଈ କିପରି ଅଛନ୍ତି ?''

ଅଜା ହସି ହସି କହନ୍ତି, ''ଆଈ ତୋର ଖୁବ୍ ଭଲ ଅଛି । ଚକରା, ମକରା, ମନ୍ଦରା, ଚନ୍ଦରା, ପୁନେଇ ସୁନେଇ ଆଦିଙ୍କୁ ଖୋଇପେଇ ବଢ଼େଇ ଚାଲିଛି । ତାକୁ କ'ଣ ଟିକେ ତର ଅଛି ନାତି ? ଏତେଗୁଡିଏ ପିଲାଙ୍କୁ ଯତନ ନେଉ ନେଉ ଆଈର ଦିନକାଳ ସରି ଆସୁଛି ।''

ଅଜା ବୟସରେ ଆଈଙ୍କ-ଠାରୁ ଯଥେଷ୍ଟ ବଡ । ଅଜାଙ୍କ ବୟସ ଷାଠିଏ ହେଲାବେଳକୁ ଆଈର ବୟସ ଚାଳିଶ ପାଖାପାଖି । ଆଉ ପିଲାଛୁଆ ମିଶି ସାତ ଆଠଟି । ଦିନେ ମୁଁ ବୋଉକୁ ପଚାରିଲି ''ବୋଉ ଅଜାଙ୍କର ଏତେ ଛୋଟ ଛୋଟ ପିଲା କାହିଁକି ?''

ବୋଉକୁ ଏ ପ୍ରଶ୍ନ ପଚାରିଲା ବେଳକୁ ମୋର ବୟସ ହୋଇଥିଲା ସାତ ବରଷ ପାଖାପାଖି । ଦୁନିଆ ବିଷୟରେ ମୋର ବିଶେଷ କିଛି ଧାରଣା ଥିଲା ।

ମାତ୍ର ବୋଉ ମୋ କଥାର ହୁଏତ ଉଦ୍ଦେଶ୍ୟ ଠିକ୍ ଭାବେ ବୁଝି ପାରିଲା । କହିଲା ''ଅଜା ଏ ଆଈକୁ ବିଭା ହେବା ପୂର୍ବରୁ ଆଉ ଗୋଟିଏ ଆଈକୁ ବିଭା ହୋଇଥିଲେ ।

ସେ ଆଈର କୌଣସି ପିଲାଛୁଆ ନଥିଲେ । ଗାଁକୁ ମା ଠାକୁରାଣୀ (ହଇଜା) ବିଜେ କଲେ । ଆଈ ମରିଗଲେ । ପରେ ଅଜା ଏ ଆଈକୁ ବିଭା ହେଲେ । ଡେରିରେ ବାହା ହେବାରୁ ଅଜାଙ୍କର ପିଲାଛୁଆଗୁଡିକ ସାନ ସାନ ।''

ବୋଉର ଉତ୍ତର ଶୁଣି ମୁଁ ମନେ ମନେ ଭାବିଲି ସାନ ପିଲାଗୁଡିକ କେବେ ବଡ ହେବେ । ଅଜାଙ୍କ ଦୁଃଖ ଯିବ । ଆଉ ଅଜାଙ୍କ ଜୀବନକାଳ ମଧ୍ୟରେ ଏ ପିଲାଗୁଡିକ କୂଳ କିନାରାରେ ଲାଗି ପାରିବେ ତ !

ଅଜାଙ୍କ ସମ୍ପର୍କରେ ଏପରି ଭାବିବା ପାଇଁ ମୋ ମନରେ ଅଜାଙ୍କ ପ୍ରତି ଥିବା ସେହ୍ନ ଓ ଶ୍ରଦ୍ଧା ଯଥେଷ୍ଟ ଖୋରାକ ଯୋଗାଇଥିଲା । ମୁଁ ସବୁବେଳେ ଭାବୁଥିଲି କିପରି ଅଜାଙ୍କ ପିଲାମାନେ ଭଲରେ ରହିବେ । ପିଣ୍ଡାଉପରେ ଠିଆ ହୋଇ ଗାଁଦାଣ୍ଡରେ ଯାଉଥିବା ବୁଢ଼ାବୁଢ଼ୀଙ୍କ ଶବ ଦେଖିଲେ ମୁଁ ଭାବୁଥିଲି ଯଦି ଅଜା ମରିଯିବେ, ତେବେ ଏ ପିଲାମାନଙ୍କର କ'ଣ ହେବ ?''

ଏବେ ଭାବୁଛି ଏସବୁ ଥିଲା ମୋର ନିହାତି ପିଲାଳିଆମି । ଏହି ପିଲାଳିଆମିରୁ ମୁଁ ଥରେ ବାପାଙ୍କୁ ପଚାରିଥିଲି, '' ବାପା ! ଅଜା ଯଦି ମରିଯାନ୍ତି, ତେବେ ତାଙ୍କ ପିଲାମାନଙ୍କର କ'ଣ ହେବ ?''

ବାପା ମୋର ମୁଣ୍ଡ ଉପରେ ତାଙ୍କର ହାତକୁ ବୁଲାଇ ଆଣୁ ଆଣୁ ସେତେବେଳେ କହିଥିଲେ, ''ଛି, କାହାର ମରଣ ବିଷୟରେ କ'ଣ ଏମିତି ଭାବନ୍ତି ? କିଏ କେତେବେଳେ ମରିବ, ସେ କଥା କିଏ କହି ପାରିବ । ଗଛରୁ କଞ୍ଚା ପତ୍ରଟିଏ ଝଡି ପଡିଲାବେଳେ ପୁଣି ପାଚିଲା ପତ୍ରଟିଏ ତ ଡେମ୍ଫରେ ଲାଗି ରହୁଚି ।''

ପୁଣି ମୁଁ ସେତେବେଳେ ବାପାଙ୍କୁ ପଚାରି ଥିଲି, ''ବାପା ଆପଣ ଯାହା କହୁଛନ୍ତି ସତ, ମାତ୍ର ସେ କୁନିପିଲାଗୁଡିକଙ୍କର କ'ଣ ହେବ ।''

ଏଥରକ ବାପା ନହସି ଆଉ ରହି ପାରିଲେ ନାହିଁ । ହସି ହସି କହିଲେ ''ଆରେ ପାଗଳା ! ଅନେକ ବାପ ଛେଉଣ୍ଡ ପିଲା ବି ମଣିଷ ହେଉଛନ୍ତି । ଭଲ ସୁନାମ କମାଉଛନ୍ତି । ସେ କୁନି ପିଲାଙ୍କର କିଛି ହେବନି । ତୁ ଯା ଏଣୁ ତେଣୁ ଚିନ୍ତା ମନକୁ ନଆଣି ଖେଳିବୁ ଯା' ।''

ମୁଁ ବାପାଙ୍କ କଥା ମାନି ଖେଳିବାକୁ ଚାଲିଗଲି ।

ସନ୍ଧ୍ୟା ଆସିଲା ବେଳକୁ ମୋତେ ମୋର ସାଥୀ ନବୀନ ଆସି କହିଲା, ''ଆରେ ସୁମନ୍ତ । ତୁ ଏଠି କ'ଣ ଖେଳୁଛୁ । ସାଡେ ଅଜା ଆସି ତୋତେ ଅପେକ୍ଷା କରିଛନ୍ତି । ତାଙ୍କ ସହିତ ଆଉ ପନ୍ଦର କୋଡିଏ ଛୁଆ ଅଛନ୍ତି । ବିରୂପା ନଈ ବାଲିକୁ ଯିବା । ଅଜା ସବୁଦିନ ପରି ତାଙ୍କର କାହାଣୀ ପେଡି ଖୋଲି ଦେବେ ।''

ନବୀନର କଥାଶୁଣି ମୁଁ ଡିଆଁଟିଏ ମାରି ଗାଁ ଦାଣ୍ଡରେ ହାଜର ହେଲି । ଅଜା ମୋତେ ଦେଖି ଖୁବ୍ ଖୁସି ହୋଇଗଲେ । କହିଲେ ନଈ ବାଲିରେ ଗପ କହିଲା ବେଳେ ସୁମନ୍ତର କାହିଁକି କ'ଣ ପ୍ରଶ୍ନ ଶୁଣିଲେ ମୋତେ ଗପର ଆସରଟିକୁ ଅତି ସହଜରେ ଜମେଇବାକୁ ପଡିଥାଏ ।''

ଜଳୌକା ପାହାଡର ପାଦଦେଶ । ସେହି ପାଦଦେଶର ତଳେ ଗୋଟିଏ ଛୋଟିଆ ଗାଁ ରୁଦ୍ରପୁର । ଗୋଟିଏ ପଟେ ଗାଁ ମଧ୍ୟକୁ ପଶିଲେ ଆର ପଟରେ ବାହାରି ହୋଇଯାଏ । ଗାଁର ଶେଷ ମୁଣ୍ଡରେ ଏକ ବିରାଟ ନଦୀ ବନ୍ଧ । ବିରୂପାନଦୀର ବନ୍ୟାଦାଉରୁ ଆଖପାଖ ଗାଁଗୁଡିକୁ ରକ୍ଷା କରିବା ଲାଗି ଏହି ନଦୀ ବନ୍ଧର ତିଆରି ।

ନଦୀ ବନ୍ଧକୁ ପାର ହୋଇ ଅଳ୍ପ କିଛିବାଟ ଗଲେ ବିରୂପା ନଈ । ଖରାଦିନେ ଏହି ନଈର ବାଲିରେ ସନ୍ଧ୍ୟାବେଳକୁ ହୁଏ ବାଗୁଡି ଠାରୁ କିତିକିତି ଖେଳ ପର୍ଯ୍ୟନ୍ତ । ମଝିରେ ମଝିରେ ଏହିସବୁ ଖେଳ ଖେଳିବାକୁ ଅଜା ଆମ ସମସ୍ତଙ୍କୁ ପ୍ରୋତ୍ସାହିତ କରିଥାନ୍ତି । ଆଉ ମଝିରେ ମଝିରେ ଅଜାଙ୍କୁ ଘେରି ଆମେ ବସିଯାଉ, ଆଉ ଅଜା ତାଙ୍କର କାହାଣୀର ପେଡି ଖୋଲି ଦିଅନ୍ତି ।

ଦିନେ ଅଜା କହିଲେ, ''ନାତିଏ ଶୁଣ, ତୁମକୁ ଗୋଟିଏ ସତ ଓ ନିମକ ସଚ୍ଚା କାହାଣୀ କହୁଚି । ଏହା କହି ଅଜା ଆରମ୍ଭ କଲେ :

ଏ ଗାଁଟା ଥିଲା ଜମିଦାରୀ ଗାଁ । ବ୍ରିଟିଶ ସରକାରଙ୍କ ଅମଳରେ ଜମିଦାରଙ୍କ ଖୁବ୍ ପ୍ରକୋପ ଥିଲା । ଗାଁ ଦାଣ୍ଡରେ କେହି ଯୋତା କିମ୍ବା ଚପଲ ପିନ୍ଧି ଯାଇ ପାରିବେନି । ଗାଁ ଭିତରକୁ ପଶିଲେ ମୁଣ୍ଡରେ ରଖି ଚାଲିବେ । ସେପରି ନକଲେ ଦଣ୍ଡ ପାଇବେ ।''

ପୁଣି ଆରମ୍ଭ କଲେ, ''ସମସ୍ତେ ଅତ୍ୟାଚାରୀ ନଥିଲେ । କେହି କେହି ଭଲଲୋକ ଥିଲେ । ଦୁଃଖି ରଙ୍କି ଗରିବ ଗୁରୁବାଙ୍କ କଥା ବୁଝୁଥିଲେ ।

ସେତିକି ବେଳେ ମୁଁ ଅଜାଙ୍କୁ ପଚାରି ଥିଲି, ''ଅଜା ! ଏ କ'ଣ ନିମକ ସଚ୍ଚା କାହାଣୀ ?''

ଅଜା କହିଲେ, ''ଆରେ ଏ ହେଉଛି ଉପକ୍ରମ । ତୁମେ ହଡା ବଳଦର ଆତ୍ମ କାହାଣୀ ରଚନା ଲେଖିବା ପୂର୍ବରୁ ଯେମିତି ଉପକ୍ରମ ଲେଖ, ମୁଁ ସେମିତି ଏଣୁ ତେଣୁ ଟିକିଏ ଆଲୋଚନା କରି ଗପର କାହାଣୀ କହେ ।''

''ଏଣୁ ତେଣୁ ନକହି ଶୀଘ୍ର ନିମକ ସଚ୍ଚା କାହାଣୀ କୁହ ଅଜା'', ମୁଁ କହିଲି ।

ଅଜା କହିଲେ, ''ଶୁଣ । ଥରେ କୌଣସି କାରଣରୁ ସରକାର ଋଣ ଶୁଝି ନପାରିବାରୁ ଗାଁର ଜନୈକ ଜମିଦାରଙ୍କ ଘର କୋରକ କରିବାକୁ ଜଣେ ସାହେବ ଅଫିସର ଆସିଲେ । ତାଙ୍କ ସହିତ ଗାଁର ବୁଢ଼ା ଚଉକିଆ କପିଳା ମଧ୍ୟ ଖାକୀ ପୋଷାକ

ପିଛି ସରକାରଙ୍କ ତରଫରୁ ଆସିଥିଲା । ଘର ଭଙ୍ଗା କାମ ଆରମ୍ଭ ହେଲା । ଜମିଦାରଙ୍କ ଘର କୋରକ କାମ ଯେମିତି ଆରମ୍ଭ ହୋଇଛି, ସେତେବେଳେ କପିଳାର ରାଗ ଦେଖେ କିଏ ?''

ମୁଁ ପଚାରିଲି, ''କପିଳା କ'ଣ କଲା ?''

ଅଜା କହିଲେ, '' ସରକାରଙ୍କ ତରଫରୁ ଆସିଥିବା ସରକାରୀ ଚଉକିଆ ବୁଢ଼ା କପିଳା ଘରର ଜିନିଷ ପତ୍ର ନିଲାମ ପାଇଁ ବୋହୁଥିବା ଲୋକମାନଙ୍କୁ ମାରି ଗୋଡେଇଲା ।'' ଚଉକିଆର ଏପରି କାମ ଦେଖି ଆସିଥିବା ସାହେବ ହାକିମ୍ କହିଲା, ''ସେଇଟାକୁ ଧର । ମାଡି ବସ ।''

ଏହି ସମୟରେ କପିଳା ଏପରି ବାଡି ବୁଲାଇଲା ଯେ ତା ପାଖରେ କେହି ପଶି ପାରିଲେ ନାହିଁ । ଶେଷରେ ସାହେବ ନିଜେ ଯାଇଁ ତାକୁ ମାଡି ବସିଲା ଓ କୋରକ କାମ ସରିବା ପର୍ଯ୍ୟନ୍ତ କପିଳା ବୁଢ଼ା ଗୋଟିଏ ଗଛରେ ବନ୍ଧା ହୋଇ ରହିଲା ।

ଅଜା ପୁଣି କହି ଚାଲିଲେ, ''କୋରକ କାମ ସରିଲା । ଜମିଦାରଙ୍କ ସବୁ ଜିନିଷପତ୍ର ନିଲାମ ହେଲା । ଏକାମ ଦାମ ସରୁ ସରୁ ସନ୍ଧ୍ୟା ହୋଇଗଲା ।

ସନ୍ଧ୍ୟାବେଳକୁ ସାହେବ ଗଛ ଆଡକୁ ଚାହିଁ କହିଲା, ''ଏବେ ଏ ବୁଢ଼ା କଥା ବିଚାର ହେବ ।''

ସେତେବେଳକୁ ଗାଁ ଦାଣ୍ଡରେ ଶହ ଶହ ଲୋକ ଜମା ହୋଇଯାଇଥିଲେ । କିଏ କହିଲା ବୁଢ଼ା କପାଳ ଫାଟିଲା । ଆଉ କିଏ କହିଲା ବୁଢ଼ାକୁ ଗାଁମୁଣ୍ଡେ ଫାଶି ଦିଆ ବରଗଛରେ ଝୁଲାଇ ଦିଆଯିବ ।

ଅଜାଙ୍କ କଥାଶୁଣି ସବୁ ପିଲାଏ ଏକ ସ୍ୱରରେ କହିଲେ, ''ସାହେବ ନିଶ୍ଚିତ ଭାବେ ବୁଢ଼ାଟାକୁ ଗାଁ ମୁଣ୍ଡ ଫାଶୀ ଦିଆ ବରଗଛରେ ଝୁଲେଇ ଦେଇଥିବ ।''

ଅଜା କହିଲେ, ''ନା, ସେପରି କଲା ନାହିଁ ।''

ଆଉ ତେବେ ?

ସାହେବ କପିଳା ବୁଢ଼ାକୁ ପଚାରିଲା, ''ହଇରେ ତୁ ସରକାରୀ ଲୋକ ହୋଇ ସରକାରଙ୍କ ବିରୋଧରେ ପୁଣି ଗଲୁ । ଆମ ଲୋକଙ୍କୁ ବାଡି ବୁଲେଇଲୁ ? ଏ ଅପରାଧ ପାଇଁ ତୋର ଦଣ୍ଡ କ'ଣ ହେବ ଜାଣୁ ତ ?''

କପିଳା ଚଉକିଆ କହିଲା, ''ବାବୁ ଆଜ୍ଞା ! କ'ଣ କରିବି । ପିଲାଟିବେଳକୁ ଏହି ଘରୁ କେତେ ତୋରାଣୀ ପିଇଛି । ଦାନା ଖାଇଛି । ମୋ ଆଗରେ ଏଘର ଏପରି ଛାରଖାର ହୋଇଯିବ, ଏ କଥା ଦେଖିବାକୁ ଏ ଦେହ ସହିଲାନି ବାବୁ ।''

ସାହେବ ଚଉକିଆ ବୁଢ଼ା କପିଳାର କଥା ଶୁଣି କହିଲେ, '' ଏ ବୁଢ଼ାଟାକୁ ଛାଡିଦିଅ । ସେ ହେଉଛି ନିମକ ସଚ୍ଚା ।''

ଅଜାଙ୍କ ଗପଶୁଣି ସଭି ପିଲାଏଁ ମନ ଖୁସିରେ କହିଲେ, ''ସାହେବ ଖୁବ୍ ଭଲ କଲା । ନହେଲେ କପିଳା ବୁଢ଼ାଟା.... ।''

ଏହି ସମୟରେ ନବୀନ କହିଲା, ''ଅଜା ! ରାତି ଆଠଟା ହେଲାଣି । ଆମେ ପରା ଅଜା ଛତିଆ ଯିବା ?''

ମୁଁ ପଚାରିଲି, ''କାହିଁକି ?''

ଅଜା କହିଲେ ଛତିଆରେ ନାଟ ହେଉଛି । ତୋ ବୟସ କମ୍ । ଆଉ ଟିକିଏ ବଡ ହୋଇଯା । ମୋ ଦର୍ଶକ ଦଳରେ ମୁଁ ତୋତେ ମିଶେଇ ନେବି ଯେ । ସେତେବେଳେ ଆମ ସହିତ ଦୁଇକୋଶ ବାଟ ଚାଲି ଚାଲି ତୁ ଯାଇ ପାରିବୁ ଓ ନାଟ ଦେଖି ଫେରିବୁ ।''

ମୁଁ ଅଜାଙ୍କ କଥା ଶୁଣି ସେଦିନ ନୀରବ ରହିଥିଲି ।

ଚାହୁଁ ଚାହୁଁ ପାଞ୍ଚଟି ବରଷ ବିତିଗଲା । ମୁଁ ଉଚ୍ଚପ୍ରାଥମିକ ବିଦ୍ୟାଳୟ ଛାଡି ହାଇସ୍କୁଲରେ ପାଠ ପଢ଼ିଲି । ବୋଧେହୁଏ ନବମଶ୍ରେଣୀ ହୋଇଥାଏ ।

ସେ ବର୍ଷ ଖରାଦିନେ ସେମିତି ବିରୂପା ନଈର ବାଲିରେ ଆମେ ଦଳେ ଟୋକା ବସି ଥାଉ । ଅଜା ସେଠାରେ ଆସି ପହଞ୍ଚିଲେ । କହିଲେ, ''ନାତି ଟୋକାଏ ! ନାଚ ଦେଖିବା ।''

ଅଜାଙ୍କ କଥା ଶୁଣି ଜଣେ କହିଲା, '' ଅଜା ! ଗଲାବର୍ଷ ଯେତେ ନାଚ ଦେଖେଇ ନେଲ କେଉଁଠିକୁ ଗୋଟିଏ ହେଲେ ଭଲ ନାଚ ପାର୍ଟି ଆସି ନଥିଲେ । ଖାଲି ଯାହା ରାତ୍ରୀ ଅନିଦ୍ରା ହେବା ସାର ହେଲା । ଏବର୍ଷ ଆଉ ନାଚ ଦେଖିଯିବା ନାଁ ଧରନା ।''

ଅଜା କହିଲେ, '' ଆରେ ! ଏଥରକ ଖଡାଖିଆ ନାଚ ପାର୍ଟି ଆସିନାହାନ୍ତି । ମୁଁ ଛତିଆ ଯାଇଥିଲି । ଦେଖିଲି ବିଶିଷ୍ଟ ନାଟ୍ୟକାର ରଘୁନାଥ ପଣ୍ଡାଙ୍କ ନାଚପାର୍ଟି ଆସିଛନ୍ତି । ଆଉ ନିଜେ ପଣ୍ଡା ଆପଣେ ମଧ୍ୟ ଭୂମିକାରେ ଅବତୀର୍ଣ୍ଣ ହେବେ । କ'ଣ ଯିବ ତ !''

ଅଜାଙ୍କ କଥା ଶୁଣି ସମସ୍ତେ ଖୁସି ହୋଇଗଲେ । ଗାଁରୁ ଛତିଆ ଅଭିମୁଖେ ବାହାରିବା ସମୟସ୍ଥିର ହୋଇଗଲା । ଦଶଟା ବେଳେ ନାଚ ଆରମ୍ଭ ହେବ । ତେଣୁ ସମସ୍ତେ ବାହାରି ନଅଟା ବେଳେ ଅଜାଙ୍କ ଘର ପାଖରେ ପହଞ୍ଚିବେ ।

ମୁଁ ଘରକୁ ଫେରି ବାପାଙ୍କୁ କହିଲି, ''ବାପା, ମୁଁ ଅଜାଙ୍କ ସହିତ ଛତିଆ ନାଟ ଦେଖି ଯିବି ।''

ମୋ କଥା ଶୁଣି ବାପା କହିଲେ, ''ଭଲ କଥା, ଯା', ମାତ୍ର ନାଟକର ସାମାଜିକ ଓ ଶିକ୍ଷଣୀୟ ଦିଗଗୁଡ଼ିକୁ ଲକ୍ଷ୍ୟ କରିବୁ । ନିଜେ ପଣ୍ଡା ମହାଶୟ ସେଗୁଡ଼ିକୁ ଅତି ଚମତ୍କାର ସଂଳାପ ଦେଇ ଲେଖିଛନ୍ତି ।''

ବାପାଙ୍କ କଥା ଶୁଣି ମୋ ଦେହରେ ଟିକିଏ ଜୀବନ ପଶିଗଲା ।

ମୁଁ ଭାବିଥିଲି ବାପା ମୋତେ ନାଟକ ଦେଖି ଯିବାକୁ ହୁଏତ ଅନୁମତି ଦେବେ ନାହିଁ । ଏତେ ଶୀଘ୍ର ଅନୁମତି ଦେବାଟା ମୋ ପ୍ରତି ଏକ ସୌଭାଗ୍ୟ ଥିଲା ।

ଦିନେ ନୁହେଁ, ଦୁଇଦିନ ନୁହେଁ, ଲାଗେ ଲାଗେ ଚାରି ପାଞ୍ଚ ଦିନ ଅଜା ଆମକୁ ନାଚ ଦେଖେଇ ନେଲେ ।

ବୁଢ଼ା ଅଜାଙ୍କ ସହିତ ରସିକିଆ ଟୋକା ପଂଝାଙ୍କ ନାଚ ଦେଖା କଥା ଭାବିଲେ ଆଜିବି ମନ ମଧ୍ୟରେ ଖୁବ୍ ଆନନ୍ଦ ଆସେ ।

ଚାରି ପାଞ୍ଚଦିନର ନାଟଦେଖା ପାଖରେ ମୁଁ ଲକ୍ଷ୍ୟକଲି ଅଜା ଆମର ପେଣ୍ଡାଲ ପାଖରୁ ଅଳ୍ପ ଦୂରରେ ଥିବା ଏକ ଖୁଣ୍ଟକୁ ଆଉଜି ବସି ଯାଇଛନ୍ତି । ମୁଁ ମଝିରେ ମଝିରେ ଅଜାଙ୍କୁ ଚାହୁଁଥାଏ । ଅଜା ଖୁଣ୍ଟକୁ ଆଉଜି ଶୋଇଯାଉଥାନ୍ତି । ଆଖି ଖୋଲି ଅଭିନୟ ଦେଖୁ ନାହାଁନ୍ତି ।

ସେତେବେଳେ ମୁଁ ମନେ ମନେ ଭାବୁଥିଲି, ''ତେବେ ଅଜା କାହିଁକି ଏମିତି ନାଟଦେଖିବାକୁ ଆସୁଛନ୍ତି । ସେ ତ ଆନନ୍ଦରେ ଘରେ ଶୋଉଥାନ୍ତେ ।''

ଏମିତି ଥରେ ଭାବୁଥିଲା ବେଳେ ନାଟକର ଗୋଟିଏ ଅଙ୍କପରେ ଏକ ଡୁଏଟ୍ ଆସିଲା। ସେ ଡୁଏଟ୍‌ରେ ଜଣେ ରଜାପୁଅ ଓ ରଜାଝିଅ ବାହାରିଲେ । ରଜାଝିଅ ରଜାପୁଅର ହାତକୁ ଧରି ଅଭିନୟର ସହିତ ଗାଇ ଚାଲିଲା:

''ରଜାପୁଅ ରଜା ଝିଅକୁ ଭୁଲି ନ'ଯା,

ତୁ ପରା ତା' ମନ ରଜା ।।''

ମୁଁ ଲକ୍ଷ୍ୟକଲି, ଡୁଏଟ୍ ଆରମ୍ଭ ହେଉ ହେଉ ନଟଅଜା ଉଠି ପଡ଼ିଲେ । ଢଳ ଢଳ କରି ତଥାକଥିତ ରଜାପୁଅ ଓ ରଜାଝିଅର ଅଭିନୟ ଉପଭୋଗ କଲେ । ଡୁଏଟ୍ ସରିଗଲା ପରେ ଖୁଣ୍ଟକୁ ଚାହିଁ ପୂର୍ବବତ୍ ଶୋଇ ପଡ଼ିଲେ ।

ସେଦିନ ନାଟକର ଚାରୋଟି ଅଙ୍କ ଥିଲ । ଅର୍ଥାତ୍ ପ୍ରତ୍ୟେକ ଅଙ୍କର ଆରମ୍ଭରୁ ଚାରୋଟି ଡୁଏଟ ଦିଆଯାଇଥିଲା । ନଟଅଜାଙ୍କର ନାଟଦେଖା ସେହି ଚାରୋଟି ଡୁଏଟ ମଧ୍ୟରେ ସୀମାବଦ୍ଧ ଥିଲା ।

ମାଟ୍ରିକ ପରୀକ୍ଷା ପରେ ମୁଁ ଗାଁ ଛାଡି କଟକ ଚାଲି ଆସିଲି । ନଟ ଅଜାଙ୍କ ସହିତ ଆଉ ଦେଖା ହେବା ବିଶେଷ କମିଗଲା । ଗାଁକୁ ମଝିରେ ମଝିରେ ଗଲେ ମୋର ନଟଅଜାଙ୍କ ସହିତ ଦେଖାହୁଏ ।

ଥରେ ମୁଁ ଦଶହରା ଛୁଟିରେ ଗାଁକୁ ଯାଇଥାଏ । ପହଞ୍ଚୁ ପହଞ୍ଚୁ ବୋଉ କହିଲା, ''ଆଜି ମାଛ ତରକାରୀ କରିବା ।''

ମୁଁ ପଚାରିଲି, ''ଏତେ ସହଳ ଗାଁରେ ମାଛ କିପରି ମିଳିବ ? ଏ ସହର ହୋଇଛି କି ?''

ବୋଉ କହିଲା, ''ସହର ନହେଉ ପଛକେ, ମୁଁ ଆଜି ତୋତେ ନିଶ୍ଚିତ ଭାବେ ମାଛ ତରକାରୀ ଖୁଆଇବି ।''

ଏହା କହି ବୋଉ ଗାଁ ଭିତରକୁ ଚାଲି ଗଲା । କିଛି ସମୟପରେ କିଛି ଶେଉଳ ଓ ମାଗୁର ମାଛ ଧରି ଆସିଲା । ଜୀଅନ୍ତ ମାଛଗୁଡିକୁ ଦେଖି ମୋ ମନ ଆନନ୍ଦରେ ନାଚି ଉଠିଲା ।

ମୁଁ ବୋଉକୁ ପଚାରିଲି, '' ଏତେ ଶୀଘ୍ର ଏତେ ବଡ ମାଛ କେଉଁଠୁ ପାଇଲୁ ?''

ବୋଉ କହିଲା, ''ନଟ ଅଜା ତୋର ଏବେ ମାଛ ଧରୁଛନ୍ତି ।''

ମୁଁ କହିଲି, ''ତାଙ୍କ ଘରେ କ'ଣ ସେମାନେ ଧରୁଥିବା ମାଛଗୁଡିକୁ ତରକାରୀ କରୁ ନାହାଁନ୍ତି ?''

ବୋଉ କହିଲା, ''ସେ ପିଲାମାନଙ୍କୁ ତାଙ୍କ ଠାରୁ ଅଲଗା କରି ଦେଇଛନ୍ତି ?''

'କି ଆଶ୍ଚର୍ଯ୍ୟ' ! ମୋ ପାଟିରୁ ବାହାରି ଆସିଲା । ପୁଣି ମୁଁ କହିଲି, ''ପିଲାଗୁଡିକ ସାନ ସାନ । ବଡ ପୁଅ ହୁଏତ ଆଉ ବର୍ଷେ ଦୁଇବର୍ଷ ମଧ୍ୟରେ କୂଳ କିନାରା ଧରିପାରିବ । ସେମାନଙ୍କୁ ଅଲଗା କରିଦେଲେ ସେମାନେ ପୁଣି କିପରି ଚଳିବେ ?''

ବୋଉ କହିଲା, ''ଆଈ ବଡ କଷ୍ଟମଷ୍ଟେ ପିଲାଗୁଡିକୁ ଚଳାଉଛନ୍ତି । ଦରକାର ପଡିଲେ ପଡୋଶୀ ଘରକୁ ଆସି ଢ଼ିଙ୍କୀ କୁଟୁଛନ୍ତି । କୁଞ୍ଚାଏ ଅଧେ ଚାଉଳ ମିଳୁଛି । ସେଇଥିରେ ଚଳୁଛନ୍ତି । ଆଉ ବୁଢ଼ାଟା ମାଛବିକି ଯାହା ପାଉଛି ସେଥିରେ ଚଳି ଯାଉଛି । ହେଲେ ପିଲାଗୁଡାଙ୍କ ମୁହଁକୁ ଚାହୁଁ ନାହିଁ ।''

ମୁଁ ବୋଉକୁ କହିଲି, ''ଗାଁରେ କ'ଣ କେହି ମୁରବୀ ସ୍ଥାନୀୟ ଲୋକ ନାହାଁନ୍ତି । ହୁଏତ ତେଲଲୁଣର ଅଭାବ ମଧ୍ୟରେ ଆଈ କଡାକରି ବୁଢ଼ାଟାକୁ କେବେ କ'ଣ କହି ଦେଇଥିବ । ସେଥିରେ ପିଲାଗୁଡାଙ୍କ ଠାରୁ ବୁଢ଼ା ଅଲଗା ହେବା ଉଚିତ୍ ନୁହେଁ । ଏହାର କୁପ୍ରଭାବ ମଧ୍ୟ ଗାଁର ସାନ ସାନ ପିଲାଙ୍କ ଉପରେ ପଡିବ ।''

ବୋଉ କହିଲା, ''ନିଆଁଲଗା ବୁଢ଼ାଟାକୁ କିଏ ବୁଝାଇବ । ବୁଝେଇଲେ କହୁଚି 'ପିଲାଗୁଡାକ ମୋ ଆଡର ନୁହଁନ୍ତି ।''

ଏହା କହି ବୋଉ ମୋ ପାଖରୁ ଚାଲିଗଲା ।

ବୋଉର କଥାର ମର୍ମକୁ ମୁଁ ଠିକ୍‌ଭାବେ ବୁଝିପାରିଲି । ପାଞ୍ଚ ସାତଟି ପିଲା ବଡ ହେବା ପରେ ଘରର ମୁରବୀ ହିସାବରେ ଭାର ବହନ କରିବା ହୁଏତ ନଟଅଜାଙ୍କ ପକ୍ଷରେ ସମ୍ଭବ ହେଉନାହିଁ । ମାତ୍ର ସାଂସାରିକ ଦାୟିତ୍ୱ ଓ ଜଞ୍ଜାଳ ଏଡାଇ ଦେବାପାଇଁ ନଟଅଜା ଦେବୀପରି ଆଈଙ୍କ ଉପରେ ଯେଉଁ କଳଙ୍କର ଦାଗ ଆଣୁଛନ୍ତି ତାହା ମୁଁ ସହି ପାରିଲି ନାହିଁ ।

ସାଂସାରିକ ଦାୟିତ୍ୱ ଏଡାଇବା ପାଇଁ ଏପରି ଅବାସ୍ତବ ଓ କଳଙ୍କିତ ମନ୍ତବ୍ୟ କ'ଣ ଏକ ମାଧ୍ୟମ ? ମୁଁ ନିଜକୁ ନିଜେ ପ୍ରଶ୍ନ କଲି ।

ଗାଁର ସେହି ଦାଣ୍ଡ ଦେଇ ଗଲା ବେଳେ ମୁଁ ଆଈଙ୍କର ନିଷ୍ପାପ ଶରୀରକୁ ଓ ମୁଖ ମଣ୍ଡଳକୁ ଦେଖେ ।

ଅତି ଶାନ୍ତଶିଷ୍ଟ ମଣିଷଟି ପରି ଅଜାଏଠି ସେଠି ବୁଲୁଥିବାର ଦେଖେ ।

ଦୁହେଁ ମୋ ଗୁରୁଜନ ।

ସେମାନଙ୍କ ଘର କଳି ସମ୍ପର୍କରେ ନା' ଅଜାଙ୍କୁ ପଚାରି ପାରେ ନା' ଆଈଙ୍କୁ ।

ଥରେ ଅଜାଙ୍କୁ ତାଙ୍କ ଅନ୍ୟାୟ ସମ୍ପର୍କରେ ପଚାରିବା ନିମନ୍ତେ ଜିଭ ହଲ ହଲ ହେଉଥିଲା ।

ମାତ୍ର ଗୁରୁଜନ ଭାବି ମୁଁ ସେତେବେଳେ ନିଜକୁ ସଂଜତ କରି ନେଇଥିଲି ।

କଥାରେ ଅଛି ସମୟ ଏକାପରି ଯାଏନା ।

ସୁଖ ଦୁଃଖ ଭଲ ମନ୍ଦ ଚକ୍ରବତ୍ ଘୂରି ଚାଲିଛି ।

ସେହି ସମୟର ପ୍ରଭାବରେ ମୁଁ କଟକରୁ ପାଠପଢ଼ା ସାରି କଲିକତାରେ ଚାକିରୀ କରିଛି । ଆଉ ମୋର ଜନ୍ମମାଟି ଅତି ଆପଣାର ଗାଁ ଦୂରରେ ରହି ଯାଇଅଛି ।

ସେ ବର୍ଷ ଦଶହରାକୁ ବୋଉ ଲେଖିଥିଲା, ''ତୁ ଅନେକ ଦିନ ହେଲା ଗାଁକୁ ଆସିନୁ । ଏ ବର୍ଷ ନିଶ୍ଚୟ ପିଲାଛୁଆଙ୍କୁ ଧରି ଦଶହରାକୁ ଗାଁକୁ ଆସିବୁ ।''

ବୋଉର କଥା ମୋର ମନେଥିଲା । ମୁଁ ପିଲାଛୁଆ ଧରି ବିଜୟଦଶମୀ ଦିନ କଲିକତା ପୁରୀ ବସ୍‌ରେ ଛତିଆଠାରେ ଓହ୍ଲେଇ ପଡିଲି ।

ବସ୍‌ରୁ ଓହ୍ଲଉ ଓହ୍ଲଉ ପଛପଟରୁ ଡାକ ଶୁଭିଲା, ''କିରେ ସୁମନ୍ତ, ତୋର ଏତେ ଦିନେ ଗାଁ କଥା ମନେ ପଡିଲା ।''

ମୁଁ ନଟଅଜାଙ୍କୁ ସାଷ୍ଟାଙ୍ଗ ମୁଣ୍ଡିଆ ମାରିଲି । ଷାଠିଏ ବର୍ଷର ନଟଅଜା । ଦୀର୍ଘ କୋଡିଏ ବର୍ଷର ବ୍ୟବଧାନ ମଧ୍ୟରେ ଅଶୀବର୍ଷରେ ପଦାର୍ପଣ କରିଛନ୍ତି । ଝୋଟ ଭଳି ମୁଣ୍ଡରେ କେରାଏ କେଶ ବିନ୍ୟାସ, ପାକୁଆ ପାଟି, ମାତ୍ର ମୁଖ ମଣ୍ଡଳରୁ ସେହପରି ହସ ଭରି ରହିଛି , ଅନାବିଳ ହସ ।

ମୁଁ ପିଲାମାନଙ୍କୁ ନଟଅଜାଙ୍କୁ ମୁଣ୍ଡିଆମାରିବାକୁ କହିଲି । ସେମାନଙ୍କୁ ରେକ୍ସାରେ ବସାଇଦେଇ କହିଲି, ''ତୁମେ ସବୁ ଯାଅ, ମୁଁ ଗପସପ ହୋଇ ନଟଅଜାଙ୍କ ସହିତ ଗାଁକୁ ଚାଲିଯିବି ।''

ପିଲାମାନେ ଗାଁକୁ ଚାଲିଗଲା ପରେ ନଟଅଜା ଓ ମୁଁ ନିକଟସ୍ଥ ଦୋକାନକୁ ଯାଇଁ ଚା'କପେ କପେ ଖାଇଲୁ ।

ଚା କପ୍‌ଟିଏ ପାଟିକୁ ନେଉ ନେଉ ନଟ ଅଜା କହିଲେ, ''ଆରେ ସୁମନ୍ତ ! ତୁ ଜାଣିଲୁଣି ନା' ମୋ ବଡ ପୁଅ ଚକରା ସେକେଟେରୀଏଟ୍‌ରେ କିରାନୀ ହୋଇଛି । ଆଉ ତା'ତଳ ମକରାକୁ ନେଇ ସେ ରେଭିନ୍ୟୁ ମିନିଷ୍ଟରଙ୍କ ପାଖରେ ରଖେଇ ଦେଇଛି । ଆମ ଘରର ଅବସ୍ଥା ବଦଳି ଯାଇଛି ।''

ଅଜାଙ୍କର ଏହିକେଇ ପଦ କଥା ମୋ ହୃଦୟତନ୍ତ୍ରୀକୁ ଆନ୍ଦୋଳିତ କଲା । ପିଲାଗୁଡିକ ସାନ ଥିଲାବେଳେ ନିଜ ପିଲା ନକହି ନିଜ ପାଖରୁ ଆଡେ଼ଇ ଦେଇଥିବା ଅଜା ପୁଣି ଆଜି କହୁଛନ୍ତି, ''ଜାଣିଲୁଣି ମୋ ପୁଅ....''

ମୁଁ ମୋ ମନରେ ଭାବକୁ ନିଜ ମନରେ ରଖି ଅଜାଙ୍କୁ ପଚାରିଲି, ''ଅଜା ! ଆଈଙ୍କୁ ତୁମେ ପାଖରେ ରଖିଛନା ଏ ବୁଢ଼ା ବଅସରେ ଡାଇଭୋର୍ସ କରିଦେଲଣି ?

ଅଜା କହିଲେ, ''କି କଥା କହୁଛୁ ! ବଡ ହେଲାରୁ କ'ଣ ତୋ ମୁଣ୍ଡରୁ ବୁଦ୍ଧି ଶୁଦ୍ଧି ଉଭେଇ ଗଲାଣି ନା କ'ଣ । ତୋ ଆଈକୁ ମୁଁ ପୁଣି ଡାଇଭୋର୍ସ କରିବି ? ସେ ସାକ୍ଷାତ ଲକ୍ଷ୍ମୀ ପ୍ରତିମାଟିଏ । ତା'ରି ପାଇଁ ମୋ ଘରର ଉନ୍ନତି ମାଡି ଚାଲିଛି ।

ମାନେ ? ମୁଁ ପଚାରିଲି ।

ଅଜା କହିଲେ, ''ଏତିକି ବୁଝି ପାରୁନୁ । ଚକରା, ମକରା, ଚାଳଘରଟିକୁ ଭାଙ୍ଗି କୋଠାଘର କରି ଦେଲେଣି । ପ୍ରତି ଘରେ ଫ୍ୟାନ୍ ପବନ ଭରି ଗଲାଣି । ମୋ ଗୋଡ କ'ଣ ଆଉ ତଳେ ଲାଗୁଛି ! ଯାହା ଟିକିଏ ବୁଢ଼ା ହୋଇ ଗଲିଣି ।''

ମୁଁ କହିଲି, ''ମୁଁ ସେସବୁ କଥା ଶୁଣିବାକୁ ଚାହୁନାହିଁ । ତୁମେ ଯଦି ଆଈଙ୍କୁ ମୋର ଡାଇଭୋର୍ସ କରି ନାହଁ ଭଲ କଥା । ମାତ୍ର ଚକରା ମକରା ଆଦି ପିଲାମାନଙ୍କୁ ଚଳେଇ ନପାରି ଯେପରି ଆଈ ମୁଣ୍ଡରେ କଳଙ୍କର ଦାଗ ଲେପୁଥିଲ, ସେଥିରେ ତୁମକୁ ଆଈଛାଡି ଚାଲି ଯାଇନାହିଁ ତ ?''

ଏଥରକ ଅଜା ମୋ ପ୍ରଶ୍ନର ସାରମର୍ମ ବୁଝି ପାରିଲେ ।

କହିଲେ, ''ନାତି ମୋ ଅତୀତ କଥା ନିଶ୍ଚିତ ଭାବେ ତୋ ମନରେ ଦୁଃଖ ଦେଇଛି । ତୋ ଆଈ ମନରେ ମଧ୍ୟ । ମୁଁ ବୁଢ଼ା ହୋଇଗଲିଣି । ମୋ ପାଇଁ ଶ୍ମଶାନର କେଇଫୁଟ ଜାଗା ଖୋଜା ହେଲାଣି । ମୋ ଦାୟିତ୍ୱ ହୀନ ମନ୍ତବ୍ୟ ପାଇଁ ମୋତେ କ'ଣ ତୁମେ ସବୁ କ୍ଷମା ଦେବନି । ତୁମେ ସବୁ କ୍ଷମା ଦେଲେ ତାହାହିଁ ହେବ ମୋ ପାଇଁ ପ୍ରାୟଶ୍ଚିତ ।''

ମୁଁ ଆଉ ବିଶେଷ କିଛି କହିଲି ନାହିଁ । ସେଦିନ ହୋଇଥାଏ ବିଜୟା ଦଶମୀ । ବିଜୟା ଦଶମୀର ପବିତ୍ରତା ମଧ୍ୟରେ ଅଜାଙ୍କ ମନର ସମସ୍ତ ପାପ ଯେ ଧୋଇ ହୋଇଯାଇଛି, ତାହା ବୁଝିବାକୁ ମୋତେ ଆଉ ବାକି ରହିଲା ନାହିଁ ।



# ଥୁଣ୍ଟା ବରଗଛ

ସେଦିନ ଜଳଖିଆ ଦେଉ ଦେଉ ବୋଉ ମୋତେ ପଚାରିଲା, ‘‘ଆରେ, ତୁ ଆଜି ସ୍କୁଲକୁ ଯିବୁ ନାହିଁ ବୋଲି କାହିଁକୁ କହୁଚୁ ?’’

ମୁଁ କହିଲି, ‘‘ବୋଉ, ଚାରି ପାଞ୍ଚ ଦିନ ହେଲା ବଡମାଷ୍ଟ୍ରେ ଆମର ଛୁଟି ନେଇଛନ୍ତି । ସ୍କୁଲକୁ ଯିବାକୁ ଭଲ ଲାଗୁନାହିଁ ।’’

ମୋର କଥାଶୁଣି ବୋଉ ହସି ହସି କହିଲା, ‘‘ବଡମାଷ୍ଟ୍ରେ ନ ଆସିଲେ ନାହିଁ । ସାନ ମାଷ୍ଟ୍ରେତ ସ୍କୁଲକୁ ଆସୁଥିବେ ।’’

ମୁଁ କହିଲି, ‘‘ସେ କଥା ସତ, ହେଲେ.... ।’’

ବୋଉ କହିଲା, ‘‘ଆଉ ହେଲେ ଫେଲେ କିଛି ନାହିଁ । ତୋତେ ଆଜି ସ୍କୁଲକୁ ଯିବାକୁ ପଡିବ ।’’

ବୋଉର ତାଗିଦ୍ ଶୁଣି ମୁଁ ଟିକିଏ ନୀରବ ରହିଲି । କହିଲି, ‘‘ମୁଁ ତୋ କଥାରେ ଆଜି ସ୍କୁଲକୁ ଯିବି । ଯଦି ବେତ ମାଡରେ ମୋ ପିଠିରେ ଦାଗ ପଡିଯାଏ, ତେବେ ତୁ ଦାୟୀ ରହିବୁ ।’’

ଏବେ ମୁଁ କାହିଁକି ସ୍କୁଲକୁ ଯିବାକୁ ରାଜି ନାହିଁ ତାହା ବୋଉ ବୁଝି ପାରିଲା ।

ମନେ ମନେ କ’ଣ ଭାବିଲା କେଜାଣି ମୋତେ ପଚାରିଲା, ‘‘ବଡମାଷ୍ଟ୍ରେ ଥିଲାବେଳେ କ’ଣ ସାନ ମାଷ୍ଟ୍ରେ ପିଲାଙ୍କୁ ବାଡଉ ନାହାଁନ୍ତି ?’’

ମୁଁ କହିଲି, ‘‘ହଁ, ମଝିରେ ମଝିରେ ବାଡଉଛନ୍ତି । ହେଲେ ମାଡ ଶବ୍ଦ ଶୁଣିଲେ ବଡମାଷ୍ଟ୍ରେ ନିଜ ପାଠପଢ଼ା ଛାଡି ସାନମାଷ୍ଟ୍ରେଙ୍କ ପାଖକୁ ଚାଲି ଆସୁଛନ୍ତି ଆଉ କହୁଛନ୍ତି, ‘‘ପିଲାଟିକୁ ମାଡ ଦେଲେ ତା’ ମୁଣ୍ଡ ତ ଖରାପ ହେବ । ସେ ପୁଣି ପାଠ କ’ଣ ବୁଝିବ ?’’

‘‘ବଡ ମାଷ୍ଟ୍ରଙ୍କ କଥା ଶୁଣି ସାନମାଷ୍ଟ୍ରେ ତାଙ୍କ ଉପରେ ରାଗୁନାହାଁନ୍ତି ତ !’’ ବୋଉ ପଚାରିଲା ।

ମୁଁ କହିଲି, " ବୋଉ ତୁ କ'ଣ କହୁଚୁ ? ସାନ ମାଷ୍ଟ୍ରେ ପୁଣି ବଡ ମାଷ୍ଟ୍ରଙ୍କ ଉପରେ ରାଗିବେ ! ବଡ ମାଷ୍ଟ୍ରେ ଆମର ଏମିତି ସେମିତି ଲୋକ ନୁହଁନ୍ତି । ଚାରି ପାଞ୍ଚ ଖଣ୍ଡ ମୌଜାରେ ତାଙ୍କର ଆଦର । ସାନ ମାଷ୍ଟ୍ରେ ଟିକିଏ ମାରଣା ପ୍ରକୃତିର ଲୋକ ହେଲେ କ'ଣ ହେବ, ସେ ବଡ ମାଷ୍ଟ୍ରଙ୍କୁ ଖୁବ୍ ଆଦର କରନ୍ତି । ଭକ୍ତି ମଧ୍ୟ କରନ୍ତି ।"

ମୋ କଥା ଶୁଣି ବୋଉ କହିଲା "ତୁ ତ କ'ଣ ଏଣିକି ବଡ ମଣିଷପରି କଥା କହୁଚୁ । ଏମିତି କଥାବାର୍ତ୍ତା କରିବାକୁ ତୋତେ ପୁଣି କିଏ ଶିଖାଇଲା ?"

ମୁଁ କହିଲି, "ମୋର ପ୍ରିୟ ବଡ଼୍‌ସାର୍ ! ବଡ ମାଷ୍ଟ୍ରେ ।"

ବୋଉ ମୋ କଥାଶୁଣି ହସିଲା ଓ ତା'ର ନରମ ହାତରେ ମୋ ଦେହକୁ ଟିକିଏ ଆଉଁଶି ଦେଲା ।

ପିଲାମାନେ ଯେଉଁ ବଡମାଷ୍ଟ୍ରଙ୍କୁ ଏତେ ଆଦର କରନ୍ତି, ସେ ଯେ ସମୟେ ସମୟରେ ପିଲାମାନଙ୍କ ଉପରେ ଏତେ କଠୋର ହୋଇ ଯାଆନ୍ତି, ତାହା କେବଳ ତାଙ୍କୁ ଲକ୍ଷ୍ୟ କରୁଥିବା ଲୋକେ ହିଁ ଜାଣନ୍ତି ।

ଶିକ୍ଷାର୍ଥୀର ଚାରିତ୍ରିକ ସ୍ଖଳନ ଦେଖିଲେ ତାଙ୍କର ସର୍ବାଙ୍ଗ ଶରୀର ଥରିଉଠେ । ମନରେ ଅସରନ୍ତି ଦୁଃଖର ଢ଼େଉ ଲହଡି ଭାଙ୍ଗେ । ମନର ଦୁଃଖ ତାଙ୍କର କିଏ ଲକ୍ଷ୍ୟ କରୁ ନକରୁ ବିପଥଗାମୀ ହୋଇଥିବା ପିଲାଟି ନିଶ୍ଚିତ ଭାବେ ଲକ୍ଷ୍ୟ କରିଥାଏ ।

ସେ ବର୍ଷ ମୁଁ ପଞ୍ଚମ ଶ୍ରେଣୀରେ ପଢୁଥାଏ । ଖେଳଛୁଟି ହୋଇଥାଏ । ବିଦ୍ୟାଳୟର ଅନତି ଦୂରରେ ଏକ ବଗିଚା ଥାଏ । ସେହି ବଗିଚାର ଗୋଟିଏ କୋଣକୁ ଯାଇଁ ମୁଁ ଗୋଟିଏ ବିଡି ଲଗେଇଲି ।

ନିୟମିତ ବିଡି ଖାଇବା ମୋର ଅଭ୍ୟାସ ନଥିଲା । ବିଡି ଖାଇଲେ କେମିତି ଲାଗୁଚି ତାହା ପ୍ରଥମ ଥରକ ଜାଣିବାପାଇଁ ମୁଁ ପାଟିରେ ବିଡିଟିଏ ରଖି ଦିଆସିଲି ମାରି ସେଥିରେ ଅଗ୍ନି ସଂଯୋଗ କଲି ।

ଦୁଇ ତିନିଥର୍ ବିଡି ଟାଣିଛିକି ନାହିଁ ଦେଖିଲି କୌଣସି କାରଣରୁ ବଗିଚାକୁ ପ୍ରବେଶ କରୁଥିବା ବଡମାଷ୍ଟ୍ରଙ୍କ ନଜର ମୋ ଉପରେ ପଡିଛି ।

ସଙ୍ଗେ ସଙ୍ଗେ ମୋ ଦେହ ନିସ୍ତବ୍ଧ ହୋଇ ଆସିଲା । ସତେ ଯେମିତି ଛାତିର ସ୍ପନ୍ଦନ ବନ୍ଦ ହୋଇ ଆସିବ !

ମୁଁ ବିଡିଟାକୁ ଖଣ୍ଡେ ଦୂରକୁ ଫିଙ୍ଗି ଦେଲି ।

ଏହି ସମୟରେ ଅତି ଶାନ୍ତ ଓ ଭଦ୍ର ଭାବରେ ବଡ ମାଷ୍ଟ୍ରେ ମୋତେ କହିଲେ, "ନା, ବିଡିଟି ଟାଣୁଥିବା ଲୋକ ବିଡିଟି ନସରିବା ପର୍ଯ୍ୟନ୍ତ ସେମିତି ଟାଣୁଥାଏ । ତୁ ସେମିତି ବିଡି ଟାଣି ଟାଣି ମୋ ପାଖକୁ ଆ' ।"

ମୁଁ କ'ଣ କରିବି କିଛି ଠିକ୍ କରି ପାରିଲି ନାହିଁ । ମୋ ମୁଣ୍ଡକୁ କୌଣସି ବୁଦ୍ଧି ଦେଖାଗଲା ନାହିଁ । ଫିଙ୍ଗି ଦେଉଥିବା ବିଡିଟି ପୁଣି ଟାଣି ଟାଣି ବଡ ମାଷ୍ଟ୍ରଙ୍କ ପାଖକୁ କିପରି ଯିବି !!

ମୁଁ ଏକ ଅପରାଧୀଟି ପରି ଠିଆ ହୋଇ ରହିଲି ।

ମାତ୍ର ବଡମାଷ୍ଟ୍ରେ ଛାଡିବା ଲୋକ ନୁହଁନ୍ତି । ବଡ କର୍କଶ ସ୍ୱରରେ ସେ କହିଲେ, "ଯଦି ବିଡିଟି ଟାଣି ନ ପାରୁଛୁ ସେମିତି ସେହି ବିଡିଟି ହାତରେ ଧରି ମୋ ପାଖକୁ ଆ' ।"

ଅଗତ୍ୟା ମୋତେ ତାହାହିଁ କରିବାକୁ ପଡିଲା । ସତୃଷ୍ଣ ନୟନରେ ଉପରକୁ ଉଠାଇଲି । ହାତରେ ଧରି ବଡମାଷ୍ଟ୍ରଙ୍କ ପାଖରେ ପହଞ୍ଚିଲି ।

ସେତେବେଳକୁ ବିଦ୍ୟାଳୟର ଅନ୍ୟସବୁ ପିଲା ଆସି ସେଠାରେ ଜମା ହୋଇଯାଇଛନ୍ତି । ସାନମାଷ୍ଟ୍ରେ ଅଳ୍ପ ଦୂରରେ ରହି ଟିକିଏ ଟିକିଏ ମୁରୁକିହସା ଦେଉଥାନ୍ତି । ମୋ ଅବସ୍ଥା କ'ଣ ହେବ, ତାହାହିଁ ଦେଖିବାକୁ ଅନ୍ୟମାନେ ଅପେକ୍ଷା କରିଥାନ୍ତି ।

କିଛି ସମୟ ନୀରବ ରହି ବଡମାଷ୍ଟ୍ରେ କହିଲେ, " ବିଡିଟିକୁ ପାଟିରେ ପୂରା ।"

ଅବାଧ୍ୟ ସନ୍ତାନ ପରି ମୁଁ ବିଡିଖଣ୍ଡକୁ ପାଟିରେ ପୂରାଇଲି ।

ପୁଣି ବଡମାଷ୍ଟ୍ରେ କହିଲେ, "ସେଥିରେ ନିଆଁ ଲଗା ।"

ଏହି ସମୟରେ ବଡମାଷ୍ଟ୍ରେ ନିଜର ଧଳା ଚଦରକୁ ଚାରିପାଞ୍ଚ ଭାଙ୍ଗ କରି ମୋ ପାଟି ଆଗରେ ଧରିଲେ ଏବଂ ମୋତେ ବିଡି ଟାଣି ସେହି ଚଦର ଉପରକୁ ଧୂଆଁ ଛାଡିବାକୁ କହିଲେ ।

ବଡ ମାଷ୍ଟ୍ରଙ୍କ ନିର୍ଦ୍ଦେଶମତେ ମୁଁ ସେହି ଚଦର ଉପରକୁ ଦଶବାର ଥର ଧୂଆଁ ଛାଡିଲି ।

ଶେଷରେ ସେହି ଚଦରକୁ ଦେଖାଇ ବଡ ମାଷ୍ଟ୍ରେ ମୋତେ ପଚାରିଲେ, "ଧୂଆଁ ଛାଡୁଥିବା ସ୍ଥାନଟି କ'ଣ ହୋଇଛି ବୋଲି ତୁ ଲକ୍ଷ୍ୟ କରୁଛୁ ?"

ମୁଁ ଦେଖିଲି ମୁଁ ଧୂଆଁ ଛାଡୁଥିବା ଚଦରର ପୃଷ୍ଠଭୂମି କଳା ପଡିଯାଇଛି ।

ସଙ୍ଗେ ସଙ୍ଗେ ବଡ ମାଷ୍ଟ୍ରଙ୍କୁ କହିଲି, "ସାର୍ । ଧୂଆଁ ବାଜିଥିବା ଚଦରର ପାର୍ଶ୍ୱଟି କଳା ପଡିଯାଇଅଛି ।"

ମୋ କଥା ଶୁଣି ବଡମାଷ୍ଟ୍ରେ ସେଠାରେ ଜମିଥିବା ସବୁ ପିଲାଙ୍କ ଆଡକୁ ଲକ୍ଷ୍ୟ କରି କହିଲେ, ''ପିଲାଏ, ଦେଖ, ପଞ୍ଚମ ଶ୍ରେଣୀରେ ପଢୁଥିବା ମୋର ପ୍ରିୟ ଛାତ୍ର ରଜନୀ ଏହି ଚଦର ଉପରକୁ ଦଶବାରଥର ଧୂଆଁ ଛାଡିବାରୁ ମୋ ଚଦରଟି ଯଦି କଳାପଡି ଯାଉଛି, ତେବେ ସେ ଯେତେବେଳେ ସବୁଦିନ ପାଇଁ ବିଡି ଟାଣିବ ତେବେ ତା'ର ଫୁସ୍‌ଫୁସ୍ କେତେ ଦୂର କଳା ପଡି ନଯିବ ? ସେ ଏକ ସୁସ୍ଥ ଜୀବନ ନେଇ ସବୁଦିନେ ବଞ୍ଚିପାରିବ ତ ?''

ସେ ଦିନର ଏପରି ପରିସ୍ଥିତିରେ ମୁଁ ଯେତିକି ମ୍ରିୟମାଣ ହୋଇ ନଥିଲି ସେଦିନ ମୋର କୁକର୍ମ ପାଇଁ ବଡ ମାଷ୍ଟ୍ରଙ୍କ ମନରେ ଦୁଃଖ ଦେଖି ମୋତେ ଅଧିକ ଦୁଃଖିତ ହେବାକୁ ପଡିଥିଲା ।

ଛାତ୍ରବତ୍ସଳ ବଡମାଷ୍ଟ୍ରଙ୍କ ମନର ଦୁଃଖ ଓ ମୋ ପ୍ରତି କ୍ଷୋଭ ଦେଖି ଆଖିରୁ ମୋର ଧାର ଧାର ହୋଇ ଲୁହ ବୋହିବାକୁ ଲାଗିଲା ।

ମୁଁ ସଙ୍ଗେ ସଙ୍ଗେ ବଡମାଷ୍ଟ୍ରଙ୍କ ପାଦତଳେ ପଡିଗଲି ।

ମନରେ ସାହସ ସଞ୍ଚୟ କରି କହିଲି, ''ବଡମାଷ୍ଟ୍ରେ ! ମୋର ଆଚରଣ ଯେ ଆପଣଙ୍କ ମନରେ ଏତେ ଦୁଃଖ ଦେବ, ତାହା ମୁଁ ଆଗରୁ ଜାଣିଥିଲେ ଆଜି ମୋତେ ବିଡି ଖାଇବାକୁ ପଡି ନଥାନ୍ତା ! ଆପଣ ମୋତେ କ୍ଷମା କରି ଦିଅନ୍ତୁ । ଆଜିର ଏ ବିଡି ଖିଆ ମୋ ଜୀବନରେ ପ୍ରଥମ ଓ ଶେଷ ବିଡିଖିଆ ।''

ମୋ କଥା ଶୁଣି ବଡମାଷ୍ଟ୍ରେ ମୋତେ ଆନନ୍ଦରେ କୁଣ୍ଢାଇ ପକାଇଲେ ।

ସେତେବେଳକୁ ରିସେସ୍ ସମୟ ସରି ଆସୁଥିଲା । ରିସେସ୍ ସରିବାର ଘଣ୍ଟି ବାଜିଲା । ପିଲାମାନେ ନିଜ ନିଜ ଶ୍ରେଣୀକୁ ଦୌଡି ପଳାଇଲେ ।

ମୁଁ ମଧ୍ୟ ମୋ ନିଜ ଶ୍ରେଣୀକୁ ଗଲି ।

ସତେ ଯେମିତି ମୋର କିଛି ଘଟିନାହିଁ ।

ଆଉ ସବୁକଥା ସ୍ୱାଭାବିକ ଭାବେ ଚାଲିଛି ।

କଥାରେ ଅଛି ସମୟ ଓ ଜୁଆର କାହାକୁ କେବେ ଅପେକ୍ଷା କରେ ନାହିଁ ।

ସେହି ସମୟର ଡାକରାରେ ଗାଁ ମାଟି ଛାଡି ମୁଁ ସହରକୁ ଚାଲି ଆସିଲି ।

ମଝିରେ ମଝିରେ ଗାଁର ଖବର ନେଲାବେଳେ ମୁଁ ବଡମାଷ୍ଟ୍ରଙ୍କ ଖବର ନେବାରେ ଭୁଲୁ ନଥାଏ ।

ଥରେ ଛୁଟିରେ ଗାଁକୁ ଯାଇଥାଏ । ଅଫିସ ଜୀବନର ତୋଡା ତୋଡା ଫାଇଲରୁ ରକ୍ଷା ପାଇଥିବାରୁ ଛୁଟିଦିନଗୁଡିକ ହସ ଖୁସିରେ କଟାଉ ଥାଏ ।

ମଝିରେ ମଝିରେ ଏଣୁ ତେଣୁ ହାଲକା ଧରଣର ଉପନ୍ୟାସ ଆଣି ପଢୁଥାଏ ।

ଦିନେ କୌଣସି ଏକ ଉପନ୍ୟାସ ପଢୁଥାଏ । ଉପନ୍ୟାସଟି ଶସ୍ତା ହୋଇଥିଲେ ମଧ୍ୟ ସେଥିରେ ଭରି ରହିଥିବା ଚରିତ୍ର ଗୁଡିକର ସଂଳାପ ଓ ଘଟଣା ପ୍ରବାହ ଏତେ ବଳିଷ୍ଠଥାଏ ଯେ ଥରେ ପଢ଼ା ଆରମ୍ଭ କରି ନସାରି ରହି ହେଉନାଥାଏ ।

ସେଦିନ ମୁଁ ପଢୁଥିବା ଉପନ୍ୟାସଟି ଠିକ୍ ସେହିପରି ଥିଲା ।

ମୋର ପଢ଼ାକୁ ବାଧା ଦେଇ ବୋଉ କହିଲା, ''ରଜନୀ ! ଘରେ ପନିପରିବା ନାହିଁ । ନୂଆ ବୋହୂଟା ମୋର କେତେ ଜଗି ରଖି ପରିବାପତ୍ର ଖର୍ଚ୍ଚ କରିବ କହିଲୁ ?''

ମୁଁ କହିଲି, ''କି ଆଶ୍ଚର୍ଯ୍ୟ ! ତୋର ସୁନାନାକୀ ବୋହୂଟା କ'ଣ ମନ ଇଚ୍ଛା ପରିବାପତ୍ର ଖର୍ଚ୍ଚ କରି ଚାଲିବ ।''

''ଆରେ ! ସେ କଥା ମୁଁ କେତେବେଳେ କହିଲି ?'' ବୋଉ କହିଲା । ପୁଣି ଆରମ୍ଭ କଲା, ''ଘରେ ଆଳୁ ନାହିଁ । ବୋହୂ ପୋଟଳ ତରକାରୀ ଭଲ ପାଏ । ଝୁଡଙ୍ଗ ଓ ବିନ୍ କିଛି ନାହିଁ । ଲେମ୍ବୁ ଓ ଲଙ୍କାର ବିନ୍ଦୁବିସର୍ଗ ବି ନାହିଁ । ସମୁଦି ସମୁଦୁଣୀ ଖବର ଦେଇଛନ୍ତି ଆସିବା ପାଇଁ ।''

ବୋଉର କଥାରୁ ମୁଁ ଏତିକି ବୁଝିଲି ଯେ ଘରେ ପନିପରିବା ନାହିଁ । ଶାଶୁ ଓ ଶ୍ୱଶୁର ଆସୁଥିବାରୁ ସେ ଟିକିଏ ବ୍ୟସ୍ତ ଅଛି । ଘର ପାଇଁ ହାଟରୁ ପନିପରିବା ଆଣିବା ପାଇଁ ଚକରା ଦା' ଅଛନ୍ତି । ତେଣୁ ମୋ ଆଗରେ ସେ ଏପରି କାହିଁକି ପଚାରୁଛି ଜାଣିବା ପାଇଁ ପଚାରିଲି, ''ବୋଉ ! ଘରେ କ'ଣ ଚକରା ଦା' ନାହାଁନ୍ତି ?''

ବୋଉ କହିଲା, ''ହଁ, ଚକରା ଦା' ଅଛନ୍ତି ।''

ମୁଁ ପୁଣି ପଚାରିଲି, ''ତେବେ ତୁ ମୋ ଆଗରେ ପନିପରିବା କଥା କାହିଁକି କହୁଚୁ ?''

ବୋଉ କହିଲା, ''ମୁଁ ଦେଖୁଚି ତୁ ଘରକୁ ଆସିଲା ଦିନୁ ଖାଲି ବହି ଉପରେ ବହି ପଢୁଛୁ । ସବୁବେଳେ ବହି ପଢ଼ିବା ଭଲ କଥା ନୁହେଁ । ଯା' ନିଜେ ଟିକେ ହାଟ ଆଡେ ବୁଲି ଯା' ଓ ପନିପରିବା କିଛି ଧରି ଘରକୁ ଆ ।''

ବୋଉର କଥାର ସାରମର୍ମକୁ ମୁଁ ବୁଝି ପାରିଲି ।

କିଛି କ୍ଷଣ ପାଇଁ ତା'ର ସରଳ ନିଷ୍ପାପ ମୁହଁକୁ ଚାହିଁଲି ।

ଏଇ ହେଉଛି ମୋର ବୋଉ ଯାହାର ପଣତ କାନିର ଆଶୀର୍ବାଦରେ ମୁଁ ଛୋଟରୁ ଆଜି ବଡଟିଏ ହେଲିଣି । ଏଇ ହେଉଛି ମୋର ବୋଉ ଯିଏକି ମୁଁ ବଡ ବଡ ବହି ବେଶୀ ସମୟ ପଢ଼ିଲା ବେଳେ ମୋ ପାଖକୁ ଧାଇଁ ଆସି ବହିଟିକୁ ମୋ ହାତରୁ ଛଡେଇ ନିଏ ଓ କୁହେ, ''ବେଶୀ ବଡ ବଡ ବହି ପଢ଼ିବା ଉଚିତ୍ ନୁହେଁ । ମୋର ମାମୁ ପୁଅ ବଡ ବଡ ବହି ସବୁବେଳେ ପଢୁଥିଲା । ତେଣୁ ସେ ପାଗଳ ହୋଇଗଲା ।''

ବୋଉର କଥା ଓ ଯୁକ୍ତି ଶୁଣି ମୋତେ ହସଲାଗେ ।

ସବୁବେଳେ ବୋଉର ଡର ମୁଁ ଯଦି ମୋଟା, ଚଉଡା ଓ ବହୁ ପୃଷ୍ଠା ଥିବା ବହି ପଢ଼ିବି ତେବେ ମୋର ମୁଣ୍ଡ ବିଗିଡି ଯିବ ।

ତେଣୁ ମୋର ପାଠପଢ଼ାକୁ ଯେ ବୋଉ ଭଲ ପାଉନି ସେ କଥା ମୁଁ ଜାଣି ପାରି ମନେ ମନେ ହସିଲି ଓ କହିଲି, ''ବୋଉ, ବ୍ୟାଗ୍ ଆଣ୍ ! ମୁଁ ହାଟକୁ ଯିବି ଓ ତୋ କହିବା ମୁତାବକ ପରିବାପତ୍ର ଆଣିବି ।''

ବୋଉ ବ୍ୟାଗ୍ ଆଣିଦେଲା ।

ମୁଁ ହାଟକୁ ବାହାରିଲି ।

ମହାନଦୀର କୂଳରେ ଅବସ୍ଥିତ ଛୋଟିଆ ଗାଁଟିଏ । ନାଁ ତା'ର ହରଭଙ୍ଗା । ସପ୍ତାହକୁ ଦୁଇଥର ନଦୀକୂଳରେ ହାଟ ବସେ ।

ମୁଁ ହାତରେ ବ୍ୟାଗ୍ ଦୁଇଟି ଝୁଲେଇ ଝୁଲେଇ ଯାଇ ହାଟରେ ପହଞ୍ଚିଲି । ଆବଶ୍ୟକୀୟ ପନିପରିବା କିଣି ବ୍ୟାଗ୍‌ରେ ପୂରାଇଲି ।

ଏହି ସମୟରେ ମୋର ମନେ ପଡିଲା ଯେ ଖିଅର ହେବା ପାଇଁ ବ୍ଲେଡ୍ ନାହିଁ । ପୁଣି ଲୁଗାପଟା ସଫା କରିବା ପାଇଁ ସନ୍‌ଲାଇଟ୍ ସାବୁନ୍‌ଟିଏ ଦରକାର ।

ମୁଁ ହାଟ ମଝିରେ ଥିବା ବଡ ଦୋକାନକୁ ଗଲି ।

ବ୍ଲେଡ୍ ଓ ସନ୍‌ଲାଇଟ୍ ସାବୁନ୍ ପାଇଁ ଦୋକାନୀକୁ ଅର୍ଡର ଦେଲାବେଳକୁ ଦେଖିଲି ଦୋକାନୀ ପଚାରୁଛି, ''କ'ଣ ବଡମାଷ୍ଟ୍ରେ ! ଆପଣ ଡାଲି,ଜିରା ସହିତ ବିଡି କାଠାଟିଏ ନେଲେ ତ ।''

'ବଡମାଷ୍ଟ୍ରେ' ଡାକରା ଶୁଣି ମୁଁ ଚିମକି ପଡିଲି ।

ଦେଖିଲି ମୋ ଆଗରେ ଠିଆ ହୋଇଛନ୍ତି ମୋର ସେହି ପିଲାଦିନର ଆଦର୍ଶ ପୁରୁଷ ନୀତିବାନ ଶିକ୍ଷକ ଦଶଖଣ୍ଡ ମୌଜାର ପ୍ରବୀଣ ପ୍ରାଥମିକ ଶିକ୍ଷକ ମୋର ଅତି ପ୍ରିୟ, ବଡମାଷ୍ଟ୍ରେ ।

ଆଉ.......

ହାତରେ ତାଙ୍କର ଶୋଭା ପାଉଛି ବିଡି କଠାଟିଏ ।

ମୋର ଆଖିକୁ ମୁଁ ବିଶ୍ୱାସ କରି ପାରିଲି ନାହିଁ ।

ମନେ ମନେ ଭାବିଲି, ‘‘ମଣିଷ ନିଜ ଆଖିରେ ବେଳେ ବେଳେ ଯାହା ଦେଖେ ତାହା ମଧ୍ୟ ସତ ହୁଏନା । ତେବେ ମୋ ଜୀବନର ଆଦର୍ଶ ବପୁବନ୍ତ ପୁରୁଷ ସତରେ କ’ଣ ହାତରେ ବିଡି କଠାଟିଏ ଧରିଛନ୍ତି ।’’

ଆଉ ବୃଦ୍ଧ ବୟସରେ ଧୂମପାନ କରି ବହୁଦିନ ଧରି ବହୁ ପିଲାଙ୍କୁ ପାଠପଢ଼ାଇ ଥିବାର କ୍ଲାନ୍ତି ଟିକକ ଅପନୋଦନ କରୁଛନ୍ତି ।

ମୁଁ ଆଉ କିଛି ଭାବି ପାରିଲି ନାହିଁ ।

ମୋତେ ସେ ସ୍ଥାନରେ ସେପରି ଦେଖିବେ ବୋଲି ବଡମାଷ୍ଟ୍ରେ ମଧ୍ୟ ସ୍ୱପ୍ନରେ ସୁଦ୍ଧା କଳ୍ପନା କରିନଥିଲେ ।

ମୋତେ ଦେଖି ସେ ନିଜକୁ ମଧ୍ୟ ଟିକିଏ ଅପ୍ରତିଭ ମନେ କଲେ ।

ମୁଁ ମୋର ମନର ଭାବକୁ ମନରେ ରଖି ବଡମାଷ୍ଟ୍ରଙ୍କୁ ମୁଣ୍ଡ ନୁଆଁଇ ନମସ୍କାର କଲି ଓ ତାଙ୍କର ପାଦଧୂଳି ନେଇ ମୁଣ୍ଡରେ ମାରିଲି ।

ବଡମାଷ୍ଟ୍ରେ ମତେ ପଚାରିଲେ, ‘‘କ’ଣ ଛୁଟିରେ ଗାଁକୁ ଆସିଛୁ ?’’

ମୁଁ କହିଲି, ‘‘ହଁ ।’’

ହାଟ ସଉଦା ସରିଲାଣି ?

ସାରି ଦେଇଛି ।

ବେଶ ଭଲ କଥା ସାଙ୍ଗ ହୋଇ ଗାଁକୁ ଫେରିବା ।

ବଡମାଷ୍ଟ୍ରଙ୍କ ସହିତ ହାଟରୁ ଫେରିଲା ବେଳେ ବଡମାଷ୍ଟ୍ରେ ଆରମ୍ଭ କଲେ, ‘‘ମୋ ହାତରେ ବିଡି କଠାଟିଏ ଦେଖି ତୁ ଆଶ୍ଚର୍ଯ୍ୟ ହେଉଥିବୁ ।’’

ମୁଁ କିଛି ନକହି ନୀରବ ରହିଲି ।

ପୁଣି ବଡ ମାଷ୍ଟ୍ରେ କହି ଚାଲିଲେ, ‘‘ପିଲାବେଳେ ବିଡି ଖଣ୍ଡେ ପିଲା ବୁଦ୍ଧିରେ ଟାଣି ଦେଇଥିବାରୁ ମୁଁ ତୋତେ ସମସ୍ତଙ୍କ ଆଗରେ ଅପଦସ୍ଥ କରିବାରୁ ନିଶ୍ଚିତ ଭାବେ ମୋ ଉପରେ ଅଭିମାନ କରିଥିବୁ ।’’

ମୁଁ କହିଲି, ''ବଡମାଷ୍ଟ୍ରେ । ଆପଣ ଏ କ'ଣ କହୁଛନ୍ତି ? ଆପଣ ହେଉଛନ୍ତି ମୋର ବିଦ୍ୟାଦାତା ଓ ବୁଦ୍ଧି ଦାତା । ଆପଣ ସେଦିନ ମୋତେ ବୁଝେଇ ଶୁଝେଇ ଧୂମପାନର କୁପ୍ରଭାବ ସମ୍ପର୍କରେ ବୁଝେଇ ନଥିଲେ ମୁଁ ଯେ ଆଜି ଧୂମପାନ କରି ମୋର ଫୁସ୍‌ଫୁସ୍‌ଟାକୁ ନଷ୍ଟ କରି ଦିଅନ୍ତିଣି ।''

ମୋର କଥା ଶୁଣି ବଡ ମାଷ୍ଟ୍ରେ ଏକ ଦୀର୍ଘ ନିଃଶ୍ୱାସ ପକାଇଲେ ।

କହିଲେ, '' ତାହାହିଁ ମୋର ଦୁଃଖ ପୁଅ !''

ମୁଁ ପଚାରିଲି, ''କେଉଁ କଥା ?''

''ତୁମ୍ଭମାନଙ୍କୁ ସିନା ବୁଝାଇ ପାରିଲି । ମୋର ଚିନ୍ତାଧାରା ଓ ଆଦର୍ଶରେ ମଣିଷ କରି ପାରିଲି । କିନ୍ତୁ ମୋର ରକ୍ତ ଓ ଦେହ ଦେଇ ଗଢ଼ିଥିବା ମୋର ପୁଅକୁ ମୁଁ ପାରିଲିନି ?''

''ସେ କ'ଣ କଲା ?'' ମୁଁ ପଚାରିଲି ।

ବଡ ମାଷ୍ଟ୍ରେ ଆରମ୍ଭ କଲେ, ''ମାଟ୍ରିକ୍ ପରୀକ୍ଷା ବେଳକୁ ସେ ମୋତେ ବାଧ କଲା ତା'ପାଇଁ ବିଡି କିଣିବାକୁ । କହିଲା ବିଡିଟାଣି ରାତି ଅନିଦ୍ରା ହୋଇ ପାଠ ନ ପଢ଼ିଲେ ଫାଷ୍ଟ କ୍ଲାସଟା ତା'ର ହାତ ଛଡା ହେବ ।''

''ଆପଣ କ'ଣ ତା କଥା ମାନି ନେଲେ ?'' ମୁଁ ପଚାରିଲି ।

'ନା', ବଡ ମାଷ୍ଟ୍ରେ ଆରମ୍ଭ କଲେ । ଏ ଅବାନ୍ତର ଯୁକ୍ତିକୁ କେବେ କ'ଣ କେହି ମାନି ନେଇ ପାରେ ?''

ମୁଁ ପଚାରିଲି, ''ତା' ହେଲେ...... ।''

ପୁଅ ନଥିବାରୁ ଝିଅକୁ ଆଶ୍ରା କରି ମୋ ଘରେ ଆଶ୍ରିତାଥିବା ଶାଶୁ ମୋର ମୋତେ ସବୁବେଳେ କହିଲେ, '' ନାତି କ'ଣ ମୋର ବିଡି ଖାଇବ । ସେଥିପାଇଁ ତୁ ଡରୁଛୁ ? ସେ ଖାଲି ବିଡି ଟିକିଏ ଚୁଟୁମି ଦେବ । ସେତିକିରେ ସେ ନିଶ୍ଚିତ ଭାବେ ମାଟ୍ରିକ ପରୀକ୍ଷାରେ ଫାଷ୍ଟ ହେବ ।''

ଆଈର କଥାକୁ ଶୁଣୁଥିବା ଯୋଗ୍ୟ ନାତି ଓ ମୋର ପୁଅ ଆସି ରୁକ୍ଷ ଗଳାରେ କହିବ, ''ଦେଖ ବାପା, ତୁମେ ଯଦି ବିଡି ନ ଦିଅ ଓ ସେଥିଯୋଗୁଁ ମାଟ୍ରିକ ପରୀକ୍ଷାରେ ମୁଁ ଯଦି ଫାଷ୍ଟକ୍ଲାସରେ ପାଶ୍ ନକରେ ତେବେ ସେଥିପାଇଁ ତୁମେହିଁ ଦାୟୀ ହେବ ।''

''ଆପଣ କ'ଣ ତା କଥାରେ ସେଇଥି ପାଇଁ ନିଜ ହାତରେ ନିଜେ ବିଡି କିଣିଲେ ?''

ବଡମାଷ୍ଟ୍ରେ ଦୁଃଖର ସହିତ ଆରମ୍ଭ କଲେ, ''ତୋର ସେଦିନର ସେଇ ବଡମାଷ୍ଟ୍ରେ ଓ ଏ ରିଟାୟାର୍ଡ ବୁଢ଼ା ବଡମାଷ୍ଟ୍ରେଙ୍କ ମଧରେ ଥିଲା ଆକାଶ ପାତାଳ

ପ୍ରଭେଦ । ଶାଶୁ, ସ୍ତ୍ରୀ ଆଉ ଏକମାତ୍ର ପୁତ୍ରର ଅଯୌକ୍ତିକ ଦାବୀ ସହିତ କେତେ ଦିନ ବା ଏହି ଦରିଦ୍ର ଶକ୍ତିହୀନ ବୁଢ଼ାଟା ସାଲିସ୍ ନକରି ରହିଥାନ୍ତା !''

''ତେବେ ଆପଣ ନିଜ ହାତରେ....'' ମୁଁ ପଚାରିଲି ।

''ହଁ, ନିଜ ହାତରେ ତାକୁ ବିଡି କିଣି ଦେଲି'' ବଡ ମାଷ୍ଟ୍ରେ କହିଲେ ।

ସେ ନିଶ୍ଚିତ ଭାବେ ମାଟ୍ରିକରେ ପ୍ରଥମ ଶ୍ରେଣୀ ପାଇଥିବ ।'' ମୁଁ କହିଲି ।

'ନା, ସେ ପ୍ରଥମଶ୍ରେଣୀ ତ ପାଇଲା ନାହିଁ । ମୁଣ୍ଡା ମୁଣ୍ଡି ନମ୍ବର ରଖି ଦ୍ୱିତୀୟ ଶ୍ରେଣୀ ପାଇଲା । ତା'ପରେ ଏକ ବିଜ୍ଞାନ କଲେଜରେ ନାମ ଲେଖାଇଲା । ମାତ୍ର ସେତକ ପାଠ ତ ପଢ଼ିଲା ନାହିଁ, ଅଧାରୁ ପାଠ ପଢ଼ା ଛାଡି ଘରେ ବସିଲା ?''

''ଏବେ ସେ କ'ଣ କରୁଛି ? ମୁଁ ପଚାରିଲି ।

''କରିବ ଆଉ କ'ଣ ? ପାଞ୍ଚ ଦଶ 'ବର୍ଷ ହେଲା ଘରେ ବସି ବସି ସମୟ ବିତାଉଛି । ସେଦିନର ସେହି ବିଡି ଖାଇବା ଅଭ୍ୟାସ ବଢ଼ି ବଢ଼ି ନିଶା ଔଷଧ ସେବନ ପର୍ଯ୍ୟନ୍ତ ଯାଇଛି । ସେଥିରେ ପୁଣି ତ୍ରାହି ନାହିଁ । ଗୋଟିଏ ଘରେ, ନିବୁଜ କୋଠରୀରେ, ରୋଗାକ୍ରାନ୍ତ ଦେହଟାକୁ ତା'ର ଆର୍ମଚେୟାରରେ ପକାଇ ମଝିରେ ମଝିରେ ଡାକ ଦେଉଛି । ''ବାପା ! ବାପା ହୋ !! କ'ଣ ମୋ ଡାକ ଶୁଭୁଛି ନା' ନାହିଁ ? ବିଡି ଦେବତ ଦେବ ନହେଲେ ଭଲ ହେବ ନାହିଁ । ମୁଁ ଯଦି ଉଠିବି କଥାଟା ବଡ ଅସୁନ୍ଦର ହେବ ।''

ଏକ ଦୀର୍ଘ ନିଃଶ୍ୱାସ ପକାଇ ବଡ ମାଷ୍ଟ୍ରେ କହିଲେ ।

ବଡମାଷ୍ଟ୍ରଙ୍କ କଥା ଶୁଣି ମୁଁ ନୀରବ ରହିଲି ।

ବଡମାଷ୍ଟ୍ରେ ମଧ କିଛି ସମୟ ନୀରବ ରହିଲେ ।

ତା'ପରେ ଆରମ୍ଭ କଲେ, ''ମୋର ଦୁଃଖ କ'ଣ ଜାଣୁ ପୁଅ ?''

ମୁଁ ପଚାରିଲି, 'କ'ଣ ?'

ବଡମାଷ୍ଟ୍ରେ କହିଲେ, ''ମୋ ଦୁଃଖ ସହିତ ସାମିଲ ହେବାକୁ ସ୍ତ୍ରୀ ମୋର ଅନେକ ଦିନରୁ ଆରପାରିକୁ ଚାଲି ଯାଇଛି । ନାତିକୁ ବିଡି ଖଣ୍ଡିକ ଦେବା ପାଇଁ ପ୍ରବର୍ତ୍ତଉଥିବା ଶାଶୁଙ୍କର ଦୁଇବର୍ଷ ହେଲା ଦେହାନ୍ତ ହେଲାଣି । ଆଉ ଥୁଣ୍ଟା ବରଗଛଟି ଭଳି ଯାହା ମୁଁ ବଞ୍ଚିଛି । ଆଉ ମୋର ଜୀବନର ଭଲମନ୍ଦ ସାକ୍ଷୀରୂପେ ସେହି ରୁଗ୍ଣ ନିଶାଖୋର ପିଲାଟି ଯାହା ସେ ଘରେ ପଡିରହି ବେଳେ ବେଳେ 'ବାପା' 'ବାପା' ବୋଲି ଡାକ ଛାଡୁଛି ।''

ମୁଁ ଲକ୍ଷ୍ୟ କଲି ଏହି କେତେକ ଘଟଣା ବର୍ଣ୍ଣନା ସମୟରେ ବଡମାଷ୍ଟଙ୍କ ମାନସିକ ଯନ୍ତ୍ରଣା ଢ଼େର ବଢ଼ିଯାଇଥିଲା । ସେ ପାଟିରେ ଟିକିଏ ଛେପ ଢ଼ୋକି ପୁଣି କହିଲେ, ''ତଥାପି ମୋର ଆଶା ଅଛି...... ।''

ମୁଁ ପଚାରିଲି, ''କ'ଣ ?''

ସେହି ପୁଅଟି ମୋର ମୋତେ ସେମିତି 'ବାପା' 'ବାପା' ଡାକୁଥାଉ । ମୁଁ ତା' ହାତକୁ ସେମିତି ବିଡି କଠାଟିଏ ବଢ଼ାଇ ଦେଉଥାଏ । ଆଉ ମୋ ଆଗରେ ତା'ର ଜୀବନ ପ୍ରଦୀପ ସବୁଦିନ ପାଇଁ ଲିଭି ଯାଉ ।''

ମୁଁ କହିଲି, ''ଆପଣ ଏମିତି କ'ଣ କହୁଛନ୍ତି ବଡମାଷ୍ଟ୍ରେ ।''

ବଡମାଷ୍ଟ୍ରେ କହିଲେ, '' ଯାହା କହୁଚି ସତ କହୁଚି । କୌଣସି ଏକ ଦୁର୍ବଳ ମୁହୂର୍ତ୍ତରେ କୌଣସି ଏକ ଅସତ୍ୟ ଅବିବେକୀ କାର୍ଯ୍ୟକୁ ପ୍ରଶୟ ଦେଲେ ଯେ ତା'ର ପରିଣତି  ଯାହା ହେବାର ଥାଏ, ତାହାହିଁ ହୋଇଛି ମୋ ପକ୍ଷରେ । ଆଉ ସମୟ ନାହିଁ । ପିଲାଟି ବାଟକୁ ଆସିବ । ନିଶାଗ୍ରସ୍ତ ଦେହଟା ତାର ରହିଛି ମୃତ୍ୟୁର ଅପେକ୍ଷାରେ । ମୁଁ ଆଗ ମରିଗଲେ ଏ ଘରେ ପଚିସଢ଼ି ସେ ମରିଯିବ । କେହି ତା'ର ଦେଖା ଚାହାଁ କରିବେ ନାହିଁ । ବରଂ ଶେଷ ମୁହୂର୍ତ୍ତରେ ମୋ ହାତରେ ପାଣି ଟିକିଏ ପାଇ ତା'ର ଅମର ଆତ୍ମା ଟିକିଏ ଶାନ୍ତି ଲାଭ କରିବ ।''

ମୁଁ ଚାହିଁଲି ବଡମାଷ୍ଟ୍ରଙ୍କ ମୁହଁକୁ । ଜୀବନର ବିସ୍ତୀର୍ଣ୍ଣ ଚଲା ପଥରେ ସେ ଥକି ପଡିଛନ୍ତି । ବହୁ ପିଲାଙ୍କୁ ମଣିଷ କରି ପାରିଥିବା ବଡମାଷ୍ଟ୍ରେ ନିଜର ପୁଅକୁ ମଣିଷ କରି ପାରି ନାହାଁନ୍ତି ।

ଆଉ ଏକ ଥୁଣ୍ଟା ବରଗଛଟି ଭଳି ନିଜର ପୁଅର ମୃତ୍ୟୁକୁ ନିଜେ ଅପେକ୍ଷା କରି ରହିଛନ୍ତି ।

ଚାହୁଁ ଚାହୁଁ ଗାଁରେ ଛୁଟି କେଇଦିନ ସୁଖ-ଦୁଃଖ ଓ ହସ ଖୁସିରେ କଟିଗଲା ।

ମୁଁ ସହରକୁ ଚାଲି ଆସିଲି ।

କିଛି ଦିନ ପରେ ବୋଉ ଆସିଥିଲା ।

ବୋଉକୁ ମୁଁ ବଡମାଷ୍ଟ୍ରେଙ୍କ ବିଷୟରେ ପଚାରିଲି ।

ବୋଉ କହିଲା, ''ରୋଗରେ ପଡି ବଡମାଷ୍ଟ୍ରଙ୍କ ସେହି ନିଶାଗ୍ରସ୍ତ ପୁଅଟିର ଦେହାନ୍ତ ହୋଇଗଲା ।

"ଆଉ ଯେତେବେଳେ ପୁଅର ଶବକୁ ସତ୍କାର କରିବାକୁ ନିଆଗଲା, ସେତେବେଳେ ବଡମାଷ୍ଟ୍ରଙ୍କ କାନ୍ଦ ଦେଖେ କିଏ ?"

ମୁଁ ବୋଉକୁ ପଚାରିଲି, "ପୁଅଟିର ଶୁଦ୍ଧି କାର୍ଯ୍ୟ ଭଲରେ ଭଲରେ ସରିଗଲା ତ !"

ବୋଉ କହିଲା, "ବୁଢ଼ା ପାଖରେ ତ ପଇସା ପତ୍ର ନଥିଲା । ଯାହାଥିଲା ଖୋଜି ଖାଜି ବାହାର କଲା । ଗାଁର ଯୁବକ ସଂଘ ପିଲାଏ କିଛି ମଧ୍ୟ ଚାନ୍ଦାଭେଦା ଦେଲେ ।"

କିଛି ସମୟ ରହି ବୋଉ ପୁଣି ଆରମ୍ଭ କଲା, "ହେଲେ, ପୁଅ ବୁଢ଼ାଟାର ଖୁବ୍ ଧୈର୍ଯ୍ୟ । ପୁଅର ଶୁଦ୍ଧକାର୍ଯ୍ୟ ଓ ବ୍ରାହ୍ମଣ ଅଭ୍ୟାଗତଙ୍କର ଖିଆପିଆ ନିଜେ ବୁଢ଼ା ସବୁ ଦେଖୁଥିଲେ ।"

ବୋଉର କଥା ଶୁଣି ମୁଁ କହିଲି, "ବୋଉ ! ଜୀବନର ଆଦ୍ୟ ପାହଚରେ ଶିକ୍ଷାକୁ ଜୀବନର ମୂଳମନ୍ତ୍ର କରିଥିବା ବଡମାଷ୍ଟ୍ର ରୂପି ସେହି ରସାଳ ବରଗଛଟିକୁ ମୁଁ ନିଜ ପାଖରେ ଅନେକ ଥର ଦେଖିଛି । ବରଗଛର ଡାଳରେ ଆଶ୍ରା ନେଉଥିବା ବହୁ ପକ୍ଷୀଙ୍କ ଭଳି ସେ ବହୁ ପିଲାଙ୍କୁ ନିଜର ସ୍ନେହ ଓ ଆଦରର ପଶରା ମେଲାଇ ଆଶ୍ରା ଦେଉଥିଲେ । ତାଙ୍କର ସ୍ନେହସିକ୍ତ ବଚନ ଓ ଛାୟାରେ ଅନେକ ପିଲା ମଣିଷ ହୋଇଥିଲେ । ତେବେ ଆଜି ପୁଅର ମୃତ୍ୟୁରେ ସେହି ଥୁଣ୍ଟା ବରଗଛଟି ବା କିପରି ଧର୍ଯ୍ୟଚ୍ୟୁତ ହୋଇ ଭାଙ୍ଗି ପଡିବ ?"

ମୋ କଥା ଶୁଣି ବୋଉ କହିଲା, " ତୁ ଯାହା କହୁଚୁ ସବୁ ସତ । ହେଲେ ମୁଁ ଭାବୁଛି ଆଉ ବାକି ଦିନଗୁଡିକ ବୁଢ଼ାଟା କିପରି ବଞ୍ଚିବ ?"

ମୁଁ କହିଲି, "ବୋଉ ! ସେଥିପାଇଁ ତୁ ଆଦୌ ବ୍ୟସ୍ତ ହୁଅନା । ଝଡ ବତାସ ସହି ମୂକ ସାକ୍ଷୀ ପରି ଠିଆ ହୋଇଥିବା ଥୁଣ୍ଟାବରଗଛଟି ପରି ବଡମାଷ୍ଟ୍ରେ ଆମର ବଞ୍ଚି ରହିବେ । ଯେଉଁ ଦିନ ସେ ଚାଲିଯିବେ, ତୁ ଜାଣିବୁ ତାଙ୍କ ସହିତ ଗୋଟିଏ ଯୁଗ ଚାଲିଗଲା ବୋଲି ।"

ମୋ କଥା ଶୁଣି ବୋଉ ଏକ ଦୀର୍ଘ ନିଃଶ୍ୱାସ ପକାଇଲା ।



